# "ଯ୍ୟାକ୍ଟ ବନେଇବା ପିଲାଙ୍କ ଖେଳ ବସ୍ତୁରି କରିଲେ ଲାଗେନା ବେଳ" –ଫେଭି ଫେରୀ





ଅଲେଡ଼ା ଜିନିଷ, କତୁରି ଆଣ
ଖଣ୍ଡ ଖଣ୍ଡ କାଟ ଇଚ୍ଛା ପ୍ରମାଣ ।
ଫେଭିକଲ ଲଗାଅ, କଟା ବସ୍ତୁ ସଜାଅ
ଇଚ୍ଛା ପ୍ରମାଣେ ରୂପ ଆକାରକୁ ଦିଅ ।
କଣ୍ଢେଇ, ହାତି, ଘୋଡ଼ା, ହରିଣ, ଠେକୁଆ
ଗଣ୍ଡା, ମୟୂର, ବଣି, ଶୁଆ, ଶାରି, ଚଟିଆ ।
ଅଲେଡ଼ା ଜିନିଷ, କନା ଚିର-ଫଟା
କାଚ ହେଉକି କାଗଜ ଅବା କାଠ-ପଟା ।
ସବୁ କିଛି ଲଗି ପାରିବ
ସବୁ କିଛି ବନେଇ ହେବ ।
ଦାଗ ଲଗେନି, ଅଳିଆ ହୁଏନି
ସଫାସୁତୁରା କାମ ବୋଲି ବି ଚିଡ଼େନି ।
ତମ କାମ ଦେଖି, ସଭିଏଁ କହନ୍ତି ବାହାବା
ତମେ କିନ୍ତୁ କୁହ ଫେଭିକଲ ଏମ୍ ଆର୍ ବାହାବା !

ଏଷ୍ଟର୍‌ସ କେମିତି ବନେଇବ, ସେ ସମ୍ପର୍କୀୟ ମାଗଣା ନିର୍ଦ୍ଦେଶାବଳୀ ପାଇବାକୁ ଏହି କୁପନଟି ଭରି ଡାକରେ ପଠାଅ କିମ୍ବା ଲେଖ :
"ଫେଭି ଫେରୀ" ପୋଷ୍ଟ ବାକ୍‌ସ ୧୧୦୮୪, ବମ୍ବେ ୪୦୦ ୦୨୦ ।

OBM 9403 OR

ଏଷ୍ଟର୍‌ସ କେମିତି ବନେଇବ, ସେ ସମ୍ପର୍କୀୟ ମାଗଣା ନିର୍ଦ୍ଦେଶାବଳୀ ପାଇବାକୁ ଏହି କୁପନଟି ଭରି ଡାକରେ ପଠାଅ କିମ୍ବା ଲେଖ :
"ଫେଭି ଫେରୀ" ପୋଷ୍ଟ ବାକ୍‌ସ ୧୧୦୮୪, ବମ୍ବେ ୪୦୦ ୦୨୦ ।

ନାମ : ______________________
ବୟସ : ______________________
ଠିକଣା : ______________________
______________________
ସହର : ______________________
ରାଜ୍ୟ : ____________ ପିନ୍‌କୋଡ : ____________
ତମକୁ ଆମ କର୍ଣ୍ଣାର 'ଫେଭିକ୍ରାଫଟ' ମିଳିଲା କି ? ହଁ/ନାହିଁ

**ଫେଭିକଲ** ଏମ୍ ଆର୍
ସିନ୍ଥେଟିକ ଆଡେସିଭ




**ଉତ୍ତମ କାମ, ଉତ୍ତମ ନାମ, ଫେଭିକଲ୍‌ର ଇଏ୍ଟ ପରିଣାମ ।**

® ଏହି [ହାତୀ ଚିହ୍ନ] ଏବଂ **ଫେଭିକଲ** ବ୍ରାଣ୍ଡ, ଦୁହେଁ ପିଡ଼ିଲାଇଟ ଇଣ୍ଡଷ୍ଟ୍ରୀଜ ପ୍ରା.ଲି., ବମ୍ବେ-୪୦୦ ୦୨୧ ର ରେଜିଷ୍ଟର୍ଡ ଟ୍ରେଡମାର୍କ ଅଟେ ।

# ସୁପରଫାଇଟରସ୍!






ତାଙ୍କ ଖେଳର ପ୍ରଶଂସକମାନେ ତାଙ୍କୁ କହନ୍ତି 'ଲିଟଲ ମାଷ୍ଟର'। ପୃଥିବୀ ଜାଣେ ସେ ସୁପରବ୍ୟାଟସମ୍ୟାନ।

କିନ୍ତୁ ସୁନିଲ୍ ଗାଭାସ୍କର କହନ୍ତି, "ମୁଁ ହେଉଛି ସୁପରଫାଇଟର। ମୋର ଇଚ୍ଛା ମୋ ପୁଅ ବି ଏହିଭଳି ଜଣେ ହେଉ। ତେଣୁ ମୁ ତାକୁ ପିଲାଦିନୁ ଶିଖେଇବାକୁ ଆରମ୍ଭ କରିଛି। ବ୍ୟବହାର କରିବାକୁ ଫୋରହ୍ୟାନ୍ସ ଫ୍ଲୋରାଇଡ ଟୁଥପେଷ୍ଟ—ଦାନ୍ତ କଣା ବିରୁଦ୍ଧରେ ସୁପରଫାଇଟର।"

ଜୀବାଣୁମାନେ ଖାଦ୍ୟକଣରେ ରହି ବଢନ୍ତି ଓ ଅମ୍ଳ ଛାଡନ୍ତି। ଫଳରେ ଦାନ୍ତ କଣା ହୁଏ।

ଫୋରହ୍ୟାଁନ୍ସ ସୁପରଫାଇଟରରେ ଏକ ସକ୍ରିୟ ଫ୍ଲୋରାଇଡ ଅଛି ଯାହା ଦାନ୍ତର ଏନାମେଲକୁ ଶକ୍ତ କରେ। ଏହା ଦ୍ୱାରା ଦନ୍ତକ୍ଷୟ କରୁଥିବା ଜୀବାଣୁଗୁଡିକର ପ୍ରତିରୋଧ ହୁଏ।

ଆଉ ମଧ୍ୟ, ଫୋରହ୍ୟାନ୍ସର ବିଶେଷ ଆଷ୍ଟ୍ରିନଜେଣ୍ଟ ମାଢିକୁ ଜାକି କରି ରଖେ। ଫଳରେ ଦାନ୍ତର ଭିତ୍ତି ଆହୁରି ଦୃଢ ହୁଏ ଓ ଆୟୁଷ ମଧ୍ୟ ବଢିଯାଏ।

ସୁନିଲ ଆହୁରି କହନ୍ତି, 'ମୁ ମୋ ପୁଅକୁ ଦେଉଛି ଫୋରହ୍ୟାନ୍ସର ଯତ୍ନ। ଆପଣ ଦେଉଛନ୍ତି କି?'



**ଫୋରହ୍ୟାନ୍ସ**

GM-113/86 Or



# ଜହ୍ନମାମୁଁ

ଏପ୍ରିଲ ୧୯୮୭



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦

ବିଳାସିତାର ସୁଗନ୍ଧ
ସମୁଚିତ ଦାମରେ...

ପ୍ରେମ-ସତେଜତା ଆଣିବାର ସାବୁନ






ଜୟଲକ୍ଷ୍ମୀ
ଉତ୍ପାଦନ

ଗୋଲାପୀ ଓ ସବୁଜ ରଙ୍ଗରେ ଉପଲବ୍ଧ

Imageads-2107 Ori




# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

ଏ ସଂଖ୍ୟାରେ ବେତାଳ କଥା "ପ୍ରତିଶ୍ରୁତି" ଇଂରାଜୀ 'ଚନ୍ଦାମାମା'ରେ ଶ୍ରୀ ମନୋଜ ଦାସ ଲେଖିଥିବା ଗଳ୍ପର ଭାଷାନ୍ତର । ଲୋଭତୁର ହୋଇ ମଣିଷ ଅନ୍ୟର ବସ୍ତୁ ଆତ୍ମସାତ୍ କରିପାରେ, କିନ୍ତୁ ସେଥିରୁ ସେ କଦାପି ଶାନ୍ତି ପାଇ ପାରେ ନାହିଁ । ଏହାହିଁ ଏ ଗଳ୍ପରୁ ଆମେ ଜାଣିବାକୁ ପାଉଁ ।

## ଅମରବାଣୀ

ଆଶାୟା ଯେ ଦାସାସ୍ତେ ଦାସାଃ ସର୍ବଲୋକସ୍ୟ ।
ଆଶା ଯେଷାଂ ଦାସୀ, ତେଷାଂ ଦାସାୟତେ ଲୋକଃ ॥

[ଯିଏ ଆଶାର ଦାସ, ସିଏ ସାରା ଜଗତର ଦାସ । ଯିଏ ଆଶା ଆକାଂକ୍ଷାର ଊର୍ଦ୍ଧ୍ୱରେ, ସାରା ଜଗତ ତା'ର ଦାସ କହିଲେ ଅତ୍ୟୁକ୍ତି ହେବ ନାହିଁ ।]

ବର୍ଷ : ୨୦ ଏପ୍ରିଲ ୧୯୮୭ ଅଙ୍କ : ୧୦

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

"ଆହା, କି ମଜା!
ସବୁଦିନ ରସନା ପାର୍ଟି ହୋଇପାରନ୍ତା କି!"

# ରସନା

କେତେ ନାରଙ୍ଗି ସତେ!






ଭାରତର ସର୍ବାଧିକ ବିକ୍ରି ହେଉଥିବା
ସଫ୍ଟ ଡ୍ରିଙ୍କ କନ୍‌ସେନ୍‌ଟ୍ରେଟ

ଉତ୍ପାଦକ : ପାୟୋମା ଇଣ୍ଡଷ୍ଟ୍ରୀଜ, ଅସାରୱା, ଅହମଦାବାଦ-



## ତୁଷାର ମାନବ ?

ଦୁର୍ଗମ ବରଫାବୃତ ଅଞ୍ଚଳରେ ଅତିକାୟ ତୁଷାରମାନବ-ମାନେ ବା 'ୟେତି' ଅଛନ୍ତି—ମଧ୍ୟେ ମଧ୍ୟେ ଏକଥା ଶୁଣାଯାଏ । ତେବେ ଆଜଯାଏ ଏ ଦିଗରେ ପ୍ରତ୍ୟକ୍ଷ ପ୍ରମାଣ କିଛି ମିଳି ନାହିଁ । ଇଟାଲିର ପର୍ବତାରୋହଣକାରୀ ରେନୋଲ୍ଡ ମେସ୍‌ନାର୍ 'ୟେତି'ରେ ବିଶ୍ୱାସ କରୁ ନଥିଲେ । କିନ୍ତୁ ତିବ୍ବତରେ ସେ ହଠାତ୍ ତାଙ୍କଠୁଁ ମାତ୍ର ଦଶଗଜ ଦୂରରେ 'ୟେତି'ଟିଏ ଦେଖିଲେ ।

## ଭସ୍ମାବୃତ ଅଳଙ୍କାର ବିପଣି

ପ୍ରଥମ ଖ୍ରୀଷ୍ଟାବ୍ଦରେ ଇଟାଲିର ସମୃଦ୍ଧିଶାଳୀ ଓ ବିଳାସପୂର୍ଣ୍ଣ ନଗରୀ ପୋମ୍ପେ ଭିସୁଭିୟସ୍ ପର୍ବତରୁ ଲଭା-ଉଦ୍‌ଗୀରଣ ଫଳରେ ପୋତି ହୋଇ ଯାଇଥିଲା । ଏବେ ସେ ନଗରୀର ଗୋଟିଏ ଅଳଙ୍କାର ଦୋକାନ ଆବିଷ୍କୃତ ହୋଇଛି । ଭସ୍ମତଳେ ପୋତି ହୋଇ ରହିଥିଲା ଦୁର୍ମୂଲ୍ୟ ରତ୍ନରାଶି !





## ପୃଥିବୀର ପ୍ରଥମ ମହିଳା ଡାକ୍ତର

୧୮୭୫ ମସିହାରେ ମାନ୍ଦ୍ରାଜ ମେଡିକ୍ୟାଲ୍ କଲେଜ୍‌ରେ ଜଣେ ତରୁଣୀ ଭର୍ତ୍ତି ହୋଇଥିଲେ ! (ରକ୍ଷଣଶୀଳମାନଙ୍କ ପ୍ରତିବାଦ ଯୋଗୁଁ ସେ ଲଣ୍ଡନ ମେଡିକ୍ୟାଲ୍ କଲେଜ୍‌ରେ ସ୍ଥାନ ପାଇଲେ ନାହିଁ ।) କୁମାରୀ ମେରି ଶେର୍‌ଲିଏଫ୍ ନାମ୍ନୀ ଏହି ତରୁଣୀ ପୃଥିବୀର ପ୍ରଥମ ଏଲୋପାଥିକ୍ ଡିଗ୍ରୀପ୍ରାପ୍ତା ମହିଳା ଡାକ୍ତର ବୋଲି ଏବେ ଜଣାଯାଉଛି ।

ପ୍ରାଚୀନ ସାହିତ୍ୟର ଚରିତ :

# ମୟୂରଧ୍ୱଜ

ମଣିପୁରର ରାଜା ମୟୂରଧ୍ୱଜ ଏକ ବିରାଟ ଯଜ୍ଞ କରିବାକୁ ମନସ୍ଥ କରି ଯଜ୍ଞାଶ୍ୱ ଛାଡ଼ିଦେଲେ । ତାଙ୍କ ପୁତ୍ର ତାମ୍ରଧ୍ୱଜ ଅଶ୍ୱ ସହ ଗଲେ ।

ତେଣେ ରାଜା ଯୁଧିଷ୍ଠିରଙ୍କ ଅଶ୍ୱ ବି ଛଡ଼ା ହୋଇଥାଏ ଓ ତା' ସହ ଥାନ୍ତି କୃଷ୍ଣ ଓ ଅର୍ଜୁନ । ଯଜ୍ଞାଶ୍ୱକୁ ଯଦି କେହି ବାଧାଦିଏ, ତେବେ ତା' ସହ ଯୁଦ୍ଧ କରି ଅଶ୍ୱକୁ ମୁକ୍ତ କରିବା ଥିଲା ନିୟମ ।

ତାମ୍ରଧ୍ୱଜ କୌଶଳକ୍ରମେ ଯୁଧିଷ୍ଠିରଙ୍କ ଅଶ୍ୱକୁ ଧରି ନେଇଗଲେ । କୃଷ୍ଣ ଓ ଅର୍ଜୁନ ବ୍ରାହ୍ମଣ ବେଶ ଧରି ରାଜା ମୟୂରଧ୍ୱଜଙ୍କଠିଁ ପହଞ୍ଚିଲେ । ଛଦ୍ମବେଶୀ କୃଷ୍ଣ କହିଲେ, "ରାଜା, ବଣ ଭିତରେ ମୋ ପୁଅ ସିଂହ ହାବୁଡ଼ରେ ପଡ଼ିଛି । ସିଂହ କହୁଛି, ତମ ଅଙ୍ଗରୁ ଅର୍ଦ୍ଧେକ ପାଇଲେ ସେ ମୋ ପୁଅକୁ ଛାଡ଼ିଦେବ ।"

ରାଜା ମୟୂରଧ୍ୱଜ ସଙ୍ଗେ ସଙ୍ଗେ ନିଜ ଅଙ୍ଗରୁ ଅର୍ଦ୍ଧେକ ଦେବାକୁ ପ୍ରସ୍ତୁତ ହେଲେ । କିନ୍ତୁ ରାଣୀ ବାହାରି ଆସି କୃଷ୍ଣଙ୍କୁ କହିଲେ, "ମୁଁ ମୋ ସ୍ୱାମୀଙ୍କ ଅର୍ଦ୍ଧାଙ୍ଗିନୀ । ମୋତେ ନେଇଯାଅ । ରାଜାଙ୍କ ଅଙ୍ଗଚ୍ଛେଦ କର ନାହିଁ ।" କୃଷ୍ଣ କହିଲେ, "ତମେ ତମ ସ୍ୱାମୀଙ୍କ ବାମ ଅଙ୍ଗ । ସିଂହ ଚାହେଁ ଦକ୍ଷିଣ ଅଙ୍ଗ ।" ରାଜା ସଙ୍ଗେ ସଙ୍ଗେ ଦକ୍ଷିଣ ଅଙ୍ଗ କାଟିବାକୁ କହିଲେ । କିନ୍ତୁ ତାଙ୍କ ବାମ ଚକ୍ଷୁରେ ବିନ୍ଦୁଏ ଲୋତକ ଦେଖି କୃଷ୍ଣ କହିଲେ, "ରାଜା, ତମେ କାନ୍ଦୁଛ । ତମ ଦାନ ଆମେ ଗ୍ରହଣ କରିବା କିପରି ?"

ରାଜା ଉତ୍ତର ଦେଲେ, "ମୋ ବାମ ଅଙ୍ଗ ତମ ସେବାରେ ଲାଗି ପାରୁନାହିଁ, ସେହି ଦୁଃଖରେ ବାମ ଚକ୍ଷୁ ଅଶ୍ରୁପାତ କରୁଛି !"

ରାଜାଙ୍କ ଏ ଉତ୍ତର ପରେ କୃଷ୍ଣ ଛଦ୍ମ ରୂପ ତ୍ୟାଗ କରି ରାଜାଙ୍କୁ କୁଣ୍ଢାଇ ପକାଇଲେ । କୃଷ୍ଣ ଓ ଅର୍ଜୁନ ତାଙ୍କ ଅତିଥି ହୋଇ ରହିଲେ । ତାଙ୍କ ଯଜ୍ଞ ଶେଷ ହେବା ପରେ ରାଜା ମୟୂରଧ୍ୱଜ ନିଜେ ଯୁଧିଷ୍ଠିରଙ୍କ ଅଶ୍ୱ ଧରି ଯୁଧିଷ୍ଠିରଙ୍କୁ ସମର୍ପଣ କଲେ ।





# ସୁଖୀ କିଏ?

ଜଣେ ଥିଲେ ରାଜା । ରାଜାଙ୍କର ବା ଅଭାବ କ'ଣ ? ସେ ଯେତେବେଳେ ଯେଉଁ ହୁକୁମ ଦେଉଥିଲେ, ତାହା ତାମିଲ୍ ହେଉଥିଲା । ଯେଉଁଦିନ ଯାହା ଖାଇବାକୁ ମନ କରୁଥିଲେ, ତାହା ଯୋଗାଇଦିଆ ହେଉଥିଲା । କିନ୍ତୁ ଦୁଃଖର କଥା, ସେ ସୁଖୀ ହୋଇ ପାରୁ ନଥିଲେ । ଛୋଟ ଛୋଟ କଥାରେ ତାଙ୍କ ମନ ବିଗିଡି ଯାଇଥିଲା । ସେ ମନ ମାରି ରହୁଥିଲେ, କାହା ସହ ଭଲ ଭାବରେ କଥାବର୍ତ୍ତା କରୁ ନଥିଲେ ।

ଉଦାହରଣ ସ୍ୱରୂପ, ଦିନେ ସେ ଶୀକାର କରିବାକୁ ବଣକୁ ଗଲେ । କିନ୍ତୁ ଶୀକାର ପାଇଲେ ନାହିଁ । ସେ ଯୋଗୁଁ ଦିନସାରା ସେ କାହାସହ କଥାବାର୍ତ୍ତା କଲେ ନାହିଁ ।

ରାଣୀ କହିଲେ, "ଦେଖିଲ, ଗରିବ ଶୀକାରୀ ଜଣେ ଶୀକାର ନ ପାଇଲେ ସିନା ମନ ଖରାପ କରନ୍ତା ! ତମପାଇଁ ଶୀକାର ସଉକ ମାତ୍ର । ଶୀକାରରେ କେତେବେଳେ ଶୀକାରୀ ଜିତେ ତ କେତେବେଳେ ପଶୁ ତା' ହାତରୁ ଖସିଯାଇ ଜିତିଯାଏ । ସେଥିରେ ମନ ଖରାପ କରିବାର କ'ଣ ଅଛି ?"

"ହଇହେ, ତିନି ତିନିଥର କାଳ ମୁଁ ଲକ୍ଷ୍ୟ ସ୍ଥିର କଲି । ଠିକ୍ ତୀର ଛାଡ଼ିବା ବେଳକୁ ଶୀକାର ଖସି ପଳାଇଗଲା । ଆଉ ତମେ କହୁଛ କ'ଣ ନା ମନ ଖରାପ କରିବାର କ'ଣ ଅଛି ! ତମ ମୁଣ୍ଡ ଠିକ୍ ଅଛି ?" ରାଜା ବିଗିଡି ଯାଇ କହିଲେ ।

"ମହାରାଜ ! ସବୁ ଶୀକାରୀଙ୍କ ଜୀବନରେ ଏପରି ଦିନ ଆସେ ଯେଉଁଦିନ ସେମାନେ ମୋଟେ ଶୀକାର ପାଆନ୍ତି ନାହିଁ !" ରାଣୀ କହିଲେ ।

"ସବୁ ଶୀକାରୀ ଓ ମୁଁ କ'ଣ ଏକା କଥା ହେଲା ? ମୁଁ ରାଜାଟି !" ରାଜା କହିଲେ ।



"ମହାରାଜ! ପଶୁପକ୍ଷୀ କ'ଣ ସାଧାରଣ ଶିକାରୀ ଓ ରାଜାଙ୍କ ଭିତରେ ପ୍ରଭେଦ ବୁଝନ୍ତି?" ରାଣୀ ହସି ହସି କହିଲେ ।

କିନ୍ତୁ ରାଜାଙ୍କର ସେଥିରେ ଭାବାନ୍ତର ହେଲା ନାହିଁ ।

ରାତିରେ ଗୋଟାଏ ତରକାରିରେ ଲୁଣ କମ ହୋଇଛି ବୋଲି ରାଜା ରାଗିଯାଇ ଉଠି ପଡ଼ିଲେ । ରାଣୀ କହିଲେ, "ମହାରାଜ! ଗୋଟାଏ ତିଅଣରେ ସିନା ଲୁଣ କମ୍ ହୋଇଛି, ଆଉ ଏଗାର ତିଅଣରେ ତ ଠିକ୍ ଅଛି । ଆପଣ ନ ଖାଇବେ କିଆଁ?"

କିନ୍ତୁ ରାଜାଙ୍କୁ ବା ବୁଝାଇବ କିଏ? ହଁ, ଜଣେ ଲୋକ ବୁଝାଇ ପାରୁଥିଲେ । ସେ ରାଜାଙ୍କ ବୃଦ୍ଧ ମନ୍ତ୍ରୀ । ଦିନେ ସେ କହିଲେ, "ମହିମା, ବଣ ଭିତରେ ଜଣେ ଜ୍ଞାନୀ ସାଧୁ ଅଛନ୍ତି । ଆପଣଙ୍କର ଥରକୁ ଥର ଏ ମନଖରାପ-ବେମାରି ସିଏ ହୁଏତ ଭଲ କରି ପାରିବେ ।"

"ମନ୍ତ୍ରୀବର! ମୁଁ ଯାହା ଚାହୁଁଛି, ତାହା ପାଉ ନାହିଁ । ଏଥିରେ ଥରକୁ ଥର ମୋ ମନ ଖରାପ ନହେବ କିପରି?" ରାଜା କହିଲେ ।

"ମହାରାଜ, ସେଥିପାଇଁ ଆପଣଙ୍କୁ କହୁଛି କି ଆପଣ ସେ ଯୋଗୀଙ୍କୁ ଭେଟନ୍ତୁ । ସେ ହୁଏତ ଆପଣଙ୍କ ସବୁ ଅଭାବ ବା ସବୁ ଇଚ୍ଛା ଏକାଥରେ ପୂରଣ କରିଦେବେ!" ମନ୍ତ୍ରୀ କହିଲେ ।

ରାଜା ଯାଇ ସାଧୁଙ୍କୁ ଭେଟିଲେ ଓ ସବୁ କହିଲେ । ସାଧୁ କହିଲେ, "ଏଇ କଥା? ତମେ ମୋତେ ଗୋଟାଏ ମୁଦି ଦିଅ ।"

ରାଜା ସଙ୍ଗେ ସଙ୍ଗେ ତାଙ୍କ ଅଙ୍ଗୁଳିରୁ ଗୋଟିଏ ହୀରା ମୁଦି ବାହାର କଲେ ।

ସାଧୁ ହସି କହିଲେ, "ତମ ମୁଦିରେ ଚଳିବ ନାହିଁ । ତମେ ଏମିତି ଜଣେ ଲୋକଠୁଁ ମୁଦି ଆଣ, ସିଏ ସବୁବେଳେ ପ୍ରସନ୍ନ ରହୁଥିବ ।"

ପ୍ରଥମେ ରାଜା ଭାବିଲେ ଏହା ଅତି ସାଧାରଣ କଥା । ସହଜରେ ସେପରି ମୁଦିଟିଏ ସେ ପାଇଯିବେ । କିନ୍ତୁ ସେ ଯେତେ ପରିଚିତ ଲୋକଙ୍କ କଥା ମନେ ପକାଇଲେ, ସବୁବେଳେ



ଖୁସି ରହୁଥିବା କୌଣସି ଲୋକର ମୁହଁ ମନେ ପକାଇପାରିଲେ ନାହିଁ ।"

ସେ ଛଦ୍ମବେଶ ପକାଇ ରାଜ୍ୟ ବୁଲି ବାହାରିଲେ । ଗୋଟାଏ ଗାଁରେ ଜଣକ ବାରଦାରେ ବିଶ୍ରାମ କଲାବେଳେ ରାଜା ଗୃହସ୍ୱାମୀଙ୍କୁ ପଚାରିଲେ, "ଆପଣ କ'ଣ କରନ୍ତି ?" ଗୃହସ୍ୱାମୀ ଉତ୍ତର ଦେଲେ କି ସେ ଜଣେ ଜ୍ୟୋତିଷ ! ରାଜା କୌତୁହଳୀ ହୋଇ ପଚାରିବେ, "ଆପଣ ତ ନିଜ ଭବିଷ୍ୟତ ବୁଝି ପାରୁଥିଲେ । ବିପଦ ଆପଦର ସମ୍ଭାବନା ଥିଲେ ତାକୁ ଏଡ଼ାଇ ଯିବାର ବ୍ୟବସ୍ଥା କରୁଥିବେ । ଆପଣଙ୍କର ତେଣୁ ଦୁଃଖର କାରଣ ନାହିଁ !"

"ବାବୁ, ଗଣା ପଢ଼ା କରି ମୋ ମୃତ୍ୟୁର ସାଲ ତାରିଖ ବିଷୟ ଯେଉଁଦିନ ଜାଣିଲି, ସେହିଦିନରୁ ଆଉ ମୋ ମନରେ ସୁଖ ନାହିଁ ।" ଜ୍ୟୋତିଷ କହିଲେ ।

ସେଠାରୁ କିଛି ଦୂର ଯିବା ପରେ ସେ ଜଣେ କବିଙ୍କୁ ଭେଟିଲେ । ରାଜା କବିଙ୍କୁ ଚିହ୍ନି ପାରିଲେ, କିନ୍ତୁ ରାଜା ଛଦ୍ମବେଶରେ ଥିବା ଯୋଗୁଁ କବି ତାଙ୍କୁ ଚିହ୍ନିପାରିଲେ ନାହିଁ । ରାଜା ପଚାରିଲେ, "କବିବର ! ଆପଣ କୌଣସି ସମାବେଶରେ କବିତା ପଢୁଥିବା ବେଳେ ମୁଁ ଶୁଣିଛି । ଆପଣଙ୍କ ପ୍ରକୃତି ବର୍ଣ୍ଣନା ଶୁଣିଲେ ମନେହୁଏ ଆପଣ ସବୁଦା ଆନନ୍ଦରେ ଥାନ୍ତି । ମୁଁ ଠିକ୍ କହୁଛି ତ ?"

"ନା । ମୁଁ ପ୍ରକୃତିର ଫଳ ଫୁଲ, ମେଘ, ଇନ୍ଦ୍ରଧନୁ, ନଦୀ, ବର୍ଷା ଇତ୍ୟାଦି ଦେଖିଲେ ଯେତିକି ଆନନ୍ଦିତ ହୁଏଁ, ଲୋକଙ୍କ ଶଠତା, ଦୁଃଖ, ଯନ୍ତ୍ରଣା ଇତ୍ୟାଦି ଦେଖିଲେ ସେତିକି ଦୁଃଖିତ ହୁଏଁ ।" କବି କହିଲେ ।

ରାଜା ଆଉ କିଛି ନ କହି ଆଗକୁ ଆଗକୁ ଚାଲିଲେ ।

ଗୋଟିଏ ଗାଁ ଛକରେ ସେ ଦେଖିଲେ ଜଣେ ବିଦୂଷକ ଲୋକଙ୍କୁ କେତେ ମଜା କଥା କହି ଓ ମଜା ଗୀତ ଶୁଣାଇ ହସାଇ ହସାଇ ବେଦମ୍ କରୁଛି । ରାଜା ମୁଗ୍ଧ ହୋଇ ତା' କଥା ଓ ଗୀତ ଶୁଣିଲେ । ସେ ମନେ କଲେ ତାଙ୍କ ଭ୍ରମଣ ସାର୍ଥକ ହୋଇଛି । ଏଥର ସେ



ପ୍ରକୃତରେ ଜଣେ ସୁଖୀ ଲୋକର ସନ୍ଧାନ ପାଇଛନ୍ତି । ଲୋକେ ବିଦୂଷକଙ୍କୁ କିଛି କିଛି ପଇସା ଦେଇ ଚାଲିଯିବା ପରେ ରାଜା ତା' ପାଖକୁ ଯାଇ କହିଲେ, "ତୁମକୁ ଦେଖି ଧନ୍ୟ ହେଲି । ତୁମ ଭଳି ଖୁସିବାସିଆ ଲୋକ ମୁଁ ଆଜିଯାଏ ଦେଖି ନଥିଲି । ତମ ପ୍ରତି ମୋର ଇର୍ଷା ହେଉଛି ।"

ବିଦୂଷକର ଆଖିରେ ଲୁହ ଜକେଇ ଆସିଲା । ସେ କହିଲା, "ଆପଣ ଭାବଛନ୍ତି ମୁଁ ସୁଖୀ? ଆପଣମାନଙ୍କୁ ହସାଇ ଦୁଇ ପଇସା ଆୟ କରି ମୋ କୁଟୁମ୍ବ ପୋଷଣ କରେ । ବର୍ତ୍ତମାନ ଘରକୁ ଯିବା ମାନେ ବେମାର ପଡିଥିବା ମୋ ବାପାଙ୍କ ସେବା କରିବାକୁ ହେବ । ଘରେ କେତେ ସମସ୍ୟା, ସେକଥା କ'ଣ କହିବି!"

ରାଜା କିଛି ନ କହି ବିଦୂଷକ ହାତରେ କିଛି ଟଙ୍କା ଦେଇ ଚାଲିଗଲେ । ଅନ୍ୟମନସ୍କ ଭାବରେ ଚାଲିଁ ଚାଲିଁ କେତେବେଳେ ସେ ଗୋଟାଏ ବଣରେ ପଶିଯାଇଥିଲେ । ହଠାତ୍ ତାଙ୍କୁ ବହୁତ କ୍ଲାନ୍ତ ଲାଗିବାରୁ ସେ ଗୋଟାଏ ଗଛ ମୂଳରେ ବସି ପଡ଼ିଲେ । ସେତେବେଳକୁ ତାଙ୍କୁ ବହୁତ ଭୋକ ଲାଗିଲାଣି । ହଠାତ୍ ଜଣେ ଲୋକ ହସି ହସି ଆସି ତାଙ୍କ ପାଖରେ ପହଞ୍ଚିଗଲା ଓ ପଚାରିଲା, "ଆପଣ ନିଶ୍ଚେ ବାଟ ହୁଡି ବଣ ଭିତରକୁ ପଶି ଆସିଛନ୍ତି!"

ରାଜା ହଁ ଭରିଲେ । ଲୋକଟି ତାଙ୍କୁ ନିଜ କୁଡିଆକୁ ନେଇଗଲା । ରାଜା ପାଖରେ ଗୋଟିଏ ଝରଣାରେ ସ୍ନାନ କଲେ । ଲୋକଟି ତାଙ୍କୁ ଖାଇବାକୁ ଦେଲା । ସେ ସାଧାରଣ ଖାଦ୍ୟ ରାଜାଙ୍କୁ ଏତେ ସୁଆଦିଆ ଲାଗିଲା ଯେ ରାଜାଙ୍କ ଧାରଣା ହେଲା ଜୀବନରେ ସେ ସେତେ ସୁସ୍ୱାଦୁ ଖାଦ୍ୟ ଖାଇ ନଥିଲେ ।

ରାଜାଙ୍କର ମନେ ହେଲା, ଲୋକଟିର ମନରେ କୌଣସି ଦୁଃଖ ବା ଆଶଙ୍କା ନାହିଁ । ସେ ପଚାରିଲେ, "ତମେ ବେଶ୍ ଖୁସିରେ ଅଛ ବୋଲି ମନେ ହୁଏ!"

"ହଁ, ଆଜ୍ଞା । ଇଶ୍ୱରଙ୍କ କୃପାରୁ ମୋର କିଛି ଅସୁବିଧା ନାହିଁ । ଗଛ କାଟେ, ଲୋକେ

ଆସି ପଇସା ଦେଇ ଏଇଠାରୁ କାଠ ନେଇଯା'ନ୍ତି ।" ଲୋକଟି କହିଲା ।

"ଏକୁଟିଆ ରହିବାକୁ ତମକୁ ଖରାପ ଲାଗେ ନାହିଁ ?" ରାଜା ପଚାରିଲେ ।

"ଏକୁଟିଆ କାହିଁକି ? ଏଠି ମୋର ବହୁତ ସାଥୀ ଅଛନ୍ତି । ଦେଖନ୍ତୁ ସେ ମୟୂରକୁ । ସେପଟେ ଅନାନ୍ତୁ ସେ ଠେକୁଆ ଆଡ଼େ । ଏମାନଙ୍କ ସାଙ୍ଗରେ ବେଳ ଭଲରେ କଟିଯାଏ । ବଣ ମୋର ଅତି ପ୍ରିୟ ସ୍ଥାନ । ମୁଁ ବେଶ୍ ଭଲରେ ଅଛି ।" ଲୋକଟି କହିଲା ।

ରାଜା ଖୁସି ହୋଇ କହିଲେ, "ମୋର ଗୋଟିଏ ଅନୁରୋଧ ରକ୍ଷା କରିବ ? ମୋତେ ଗୋଟାଏ ମୁଦି ଦିଅ । ବଦଳରେ ଯାହା ଚାହିଁବ, ତାହା ଦେବି ।"

ଲୋକଟି ହସିଲା ଓ କହିଲା, "ବାବୁ! ମୋର ଯଦି ମୁଦି ଥା'ନ୍ତା, ତେବେ ବଦଳରେ କିଛି ନ ନେଇ ତାହା ଦେଇଥାନ୍ତି । କିନ୍ତୁ ଜୀବନରେ ମୁଁ କେବେ ମୁଦି ପିନ୍ଧି ନାହିଁ ।"

ରାଜା ନୀରବରେ ସେଠାରେ କିଛି ସମୟ ଅତିବାହିତ କରି ରାଜ-ପ୍ରାସାଦକୁ ଲେଉଟି ଗଲେ । ପରଦିନ ସେ ସାଧୁଙ୍କ ପାଖକୁ ଯାଇ କହିଲେ, "ବାବା! ମୁଁ ଶେଷକୁ ଜଣେ ସୁଖୀ ଲୋକର ସନ୍ଧାନ ପାଇଲି ଯେ, କିନ୍ତୁ ତା' ପାଖରେ ମୁଦି ନାହିଁ!"

ସାଧୁ ହସିଲେ ଓ କହିଲେ, "ଏଥର ବୁଝୁଛ ତ? ତମର ଏତେ ମୁଦି ଥାଇ ତମେ ସୁଖୀ ନୁହଁ । ସେ ଲୋକର ଗୋଟାଏ ମୁଦି ନଥାଇ ବି ସେ ସୁଖୀ । ଅର୍ଥାତ୍ ସୁଖ ସହିତ ବାହାର ଥିବା ନଥିବାର ସମ୍ପର୍କ ନାହିଁ । ମଣିଷର ବାସ୍ତବିକ ପ୍ରକୃତ ପ୍ରୟୋଜନୀୟ ଜିନିଷ ଖୁବ୍ ବେଶି ନୁହେଁ । ସେ ଅକାରଣରେ ସର୍ବଦା ଅଧିକା ଚାହୁଁଥାଏ । ଯାହାର ଗୁଡ଼ାଏ ଜିନିଷ ପାଇଁ ଆଶା ଆକାଂକ୍ଷା ନାହିଁ, ତା'ର ଦୁଃଖ ବି ନାହିଁ ।"

ରାଜା ବୁଝିଲେ । ତାଙ୍କ ଭିତରେ ପରିବର୍ତ୍ତନ ଦେଖା ଦେଲା ।






# ଅସାଧୁ ମନ୍ତବ୍ୟ

ବିଦେହର ରାଜା ବିକ୍ରମକୀର୍ତ୍ତିଙ୍କ ଦରବାରରେ ଚିନ୍ମୟ ନାମକ ଜଣେ ଅମାତ୍ୟ ଥିଲେ । ସେ ଥିଲେ ଯେପରି ଜ୍ଞାନୀ, ସେହିପରି ବିବେକବାନ୍ । ରାଜା ତାଙ୍କୁ ବିଶେଷ ଶ୍ରଦ୍ଧା କରୁଥିଲେ ।

ଚିନ୍ମୟ ବେଶି କଥାବାର୍ତ୍ତା କରୁ ନଥିଲେ, କିନ୍ତୁ ଯାହା ଯେତିକି କହୁଥିଲେ, ତାହା ଅତ୍ୟନ୍ତ ଯାଚିଚିନ୍ତି କହୁଥିଲେ ।

ରାଜା ଚିନ୍ମୟଙ୍କ ସାଥିରେ ଗପସପ ହେବାକୁ ଖୁବ ଖୁସି ପାଉଥାନ୍ତି । ଅନ୍ୟ ଅମାତ୍ୟମାନେ ରାଜାଙ୍କୁ ଏକାନ୍ତରେ ଭେଟିବାକୁ ଇଚ୍ଛାକରି ବି ସେ ସୁଯୋଗ ପାଉନଥାନ୍ତି । କିନ୍ତୁ ଚିନ୍ମୟଙ୍କୁ ରାଜା ନିଜେ ଡାକି ପଠାଉଥାନ୍ତି । ଅନେକ ସମୟରେ ରାଜାଙ୍କ ପରିଚାରକ ଯାଇ ଚିନ୍ମୟଙ୍କୁ ତାଙ୍କ ଘରେ ନ ପାଇ ଫେରି ଆସେ । କାରଣ ରାଜାଙ୍କଠୁଁ ଛୁଟି ପାଇଲେ ଚିନ୍ମୟ ଯାଇ ମନ୍ଦିରରେ ଏକାକୀ ବସି ରହନ୍ତି; ନହେଲେ କୌଣସି ସାଧୁସନ୍ଥଙ୍କୁ ଭେଟନ୍ତି ନହେଲେ କୌଣସି ସାମାଜିକ କାମରେ ଯୋଗ ଦିଅନ୍ତି ।

ଚିନ୍ମୟଙ୍କ ପ୍ରତି ରାଜାଙ୍କ ଅନୁରାଗ ଦେଖି ଅନ୍ୟ କେତେକ ଅମାତ୍ୟ ଚିନ୍ମୟଙ୍କୁ ଭୀଷଣ ଈର୍ଷା କରିବାକୁ ଆରମ୍ଭ କଲେ । ସେମାନେ କୌଣସି ମତେ ଚିନ୍ମୟଙ୍କ ପ୍ରତି ରାଜାଙ୍କ ମନରେ ଭୁଲ ଧାରଣା ଜନ୍ମାଇବାକୁ ଚାହିଁଲେ । କିନ୍ତୁ ସୁଯୋଗ ପାଉ ନଥାନ୍ତି ।

ରାଜମାତା ବହୁଦିନ ଧରି ଅସୁସ୍ଥ ଥିଲେ । ଦିନେ ତାଙ୍କର ପରଲୋକ ହୋଇଗଲା । ସବୁ ଅମାତ୍ୟ ଆସି ରାଜାଙ୍କ ଆଗରେ ଆଖିରୁ ଲୁହ ଗଡ଼ାଇଲେ ଓ ତାଙ୍କୁ ସାନ୍ତ୍ୱନା ଦେଲେ ।

କେହି କେହି ରାଜାଙ୍କୁ ଶୁଣାଇ ରଡ଼ିକରି କାନ୍ଦିଲେ । ରାଜମାତାଙ୍କ ବୟସ ବହୁତ ହୋଇଥିଲା ଓ ତାଙ୍କ ମୃତ୍ୟୁ ଅପ୍ରତ୍ୟାଶିତ

ପୂର୍ଣ୍ଣଚନ୍ଦ୍ର




ନଥିଲା । ତଥାପି ଅମାତ୍ୟମାନେ ତାଙ୍କ ମାଆଙ୍କୁ ଏତେ ଶ୍ରଦ୍ଧା କରିବାର ପ୍ରମାଣ ପାଇ ରାଜା ଖୁସି ହେଲେ ।

ରାଜା ଏଣେତେଣେ ଅନାଇ ଚିନ୍ମୟଙ୍କୁ ମନେ ମନେ ଖୋଜୁଥାନ୍ତି । କିନ୍ତୁ ଚିନ୍ମୟଙ୍କ ଦେଖା ମିଳୁ ନଥାଏ । ରାଜା ଟିକିଏ ଆଶ୍ଚର୍ଯ୍ୟ ହେଲେ ନିଶ୍ଚୟ । ଈର୍ଷୁକ ଅମାତ୍ୟମାନେ ରାଜା କାହାକୁ ଖୋଜୁଛନ୍ତି ସେକଥା ବୁଝିଗଲେ ।

ଜଣେ ଅମାତ୍ୟ ଆଉ ଜଣେ ଅମାତ୍ୟଙ୍କୁ କହିଲେ, "ଚିନ୍ମୟଙ୍କ ବିବେକ ଦେଖୁଛ ? ରାଜା ତାଙ୍କୁ କେତେ ଆଦର କରନ୍ତି, କେତେ ସମ୍ମାନ ଦିଅନ୍ତି । ଆଜି କିନ୍ତୁ ରାଜାଙ୍କ ଦାରୁଣ ଦୁଃଖବେଳେ ତାଙ୍କ ଦେଖା ନାହିଁ । ସମସ୍ତେ ସୁଖର ସାଥି, ଦୁଃଖର ସାଥି ବେଶି କେହି ହୁଅନ୍ତି ନାହିଁ ।"

ଦ୍ୱିତୀୟ ଅମାତ୍ୟ କହିଲେ, "ଚିନ୍ମୟଙ୍କୁ ସିନା ତମେ ଚିହ୍ନ ନାହିଁ, ମୁଁ ଭଲ ଭାବରେ ଚିହ୍ନେ । ସେ ଉପରକୁ ଗମ୍ଭୀର ଓ ବିବେକୀ ଦେଖାଇ ହୁଅନ୍ତି । ପ୍ରକୃତରେ ସେ ସ୍ୱାର୍ଥପର । ଯେଉଁଠି ମଉଜ୍ ମଜ୍‌ଲିସ୍, ସେ ଗୋପନରେ ସେହିଠାରେ ଯାଇ ଯୁଟନ୍ତି । ଆଜି ତାଙ୍କ ବନ୍ଧୁ ପଣ୍ଡିତ ବିଦ୍ମରାଜଙ୍କ ଝିଅ ବାହାଘର । ସେ ଯାଇ ସେଠି ବସିଛନ୍ତି । ମୁଁ ନିଜେ ଦେଖି ଆସିଲି !"

ଏ କଥାବାର୍ତ୍ତା ରାଜାଙ୍କ କାନରେ ପଡ଼ିଲା । ତାଙ୍କ ରକ୍ତ ଗରମ ହୋଇଗଲା । ବାସ୍ତବିକ୍, ସତ କଥା ତ ! ତାଙ୍କର ଏ ଦୁଃଖବେଳେ ଚିନ୍ମୟଙ୍କ ଦେଖା ନାହିଁ କପରି ? ସେ ବନ୍ଧୁଘର ଝିଅ ବାହାଘରରେ ମଜା ମାରୁଛନ୍ତି କପରି ?"

ସେ ଦୁଇ ଅମାତ୍ୟ ଯେ ଚିନ୍ମୟଙ୍କ ପ୍ରତି ଈର୍ଷା କରି ରାଜାଙ୍କୁ ଶୁଣାଇ ଶୁଣାଇ ଏକଥା କହୁଥିଲେ, ରାଜା ଏହା ବୁଝିପାରିଲେ ନାହିଁ । ସେ ସଙ୍ଗେ ସଙ୍ଗେ ତାଙ୍କ ପ୍ରହରୀମାନଙ୍କୁ ଆଦେଶ ଦେଲେ, "ଚିନ୍ମୟ ଯେଉଁଠି ଥାଆନ୍ତୁ ନା କାହିଁକି, ତାଙ୍କୁ ଧରିନେଇ କାରାରୁଦ୍ଧ କର !"

ଚିନ୍ମୟ ପଣ୍ଡିତଙ୍କ ଘରୁ ବାହାରି ଆସୁଥିବା-ବେଳେ ପ୍ରହରୀମାନେ ତାଙ୍କୁ ରାଜାଙ୍କ ଆଦେଶ ଶୁଣାଇଲେ ଓ ତାଙ୍କୁ ବନ୍ଦୀ କଲେ । ଲୋକେ ଆଶ୍ଚର୍ଯ୍ୟ ହୋଇ ଅନାଇଥାନ୍ତି । ପଣ୍ଡିତଙ୍କ

କନ୍ୟା ଓ ତା' ବରକୁ ପ୍ରାୟ ଭାସି ଯିବା ଆଡ଼କୁ ପଠାଇଲେ । ଭାଗ୍ୟକୁ ସେତେବେଳକୁ ବିବାହ ସରିଥାଏ ।

ସନ୍ଧ୍ୟାବେଳେ ଯାଇ ରାଜାଙ୍କ ବୃଦ୍ଧ ମନ୍ତ୍ରୀ ଏକଥା ଶୁଣିଲେ । ସେ ଯାଇ ରାଜାଙ୍କୁ କହିଲେ, "ଇଏ ଆପଣ କ'ଣ କଲେ ? ଆପଣ ଚଳପୁଙ୍କୁ ଡକାଇ କୈଫିୟତ ନ ମାଗି ତାଙ୍କୁ କାରାରୁଦ୍ଧ କଲେ କିପରି ?"

ସେତେବେଳକୁ ରାଜାଙ୍କ ମିଜାଜ୍ ଥଣ୍ଡା ହୋଇଗଲାଣି । ମନ୍ତ୍ରୀଙ୍କ ସହ ସେ କାରା-କକ୍ଷକୁ ଗଲେ ଓ ଚଳପୁଙ୍କୁ ପଚାରିଲେ, "ତମେ ମୋ ମାଆଙ୍କ ପରଲୋକଗମନ କଥା ଜାଣ । ତମେ ମୋତେ ସାନ୍ତ୍ୱନା ଦେବାକୁ ନହେଲେ ବି ଅନ୍ତତଃ ସୌଜନ୍ୟ ବଶତଃ ମୋତେ ଭେଟିବାକୁ ନ ଆସି ବିବାହ ମଣ୍ଡପରେ ମାତି ରହିଲ କିପରି ?"

ଚଳପୁ କହିଲେ, "ମହାରାଜ ! ପଣ୍ଡିତଙ୍କ ପିଲାପିଲି ନଥିଲେ । ସେ ଗୋଟିଏ ଅନାଥ ବାଳିକାକୁ କନ୍ୟା ରୂପେ ପାଳନ କରିଥିଲେ । ସେ ବାଳିକାକୁ ମୁଁ ମଧ୍ୟ ନିଜ ଭଉଣୀ ଭଳି ସ୍ନେହ କରୁଥିଲି । ଆପଣ ଜାଣନ୍ତି, ପଣ୍ଡିତ ଗରିବ ଲୋକ । ଆମେ ଖୋଜାଖୋଜି କରି କନ୍ୟାଟି ପାଇଁ ଭଲ ବରଟିଏ ଯୋଗାଡ଼ କଲୁ । ହଠାତ୍ ବର ପିତା ଅସୁସ୍ଥ ହୋଇ ପଡ଼ିଲେ । ମୋତେ ବରକର୍ତ୍ତା ହିସାବରେ ଭାର ତୁଲାଇବାକୁ ପଡ଼ିଲା । ବିବାହ ବନ୍ଦ ହୋଇଥିଲେ ବଡ଼ ଅସୁବିଧା ହୋଇଥାନ୍ତା । ମୁଁ ଶେଷରେ କାର୍ଯ୍ୟନିର୍ବାହ କରି ଆପଣଙ୍କ ପାଖକୁ ଯିବାକୁ ଚାହାଁଥିଲି, ସେତିକିବେଳେ ପ୍ରହରୀମାନେ ଆସି ମୋତେ ବନ୍ଦୀ କଲେ !"

ରାଜା ନତମସ୍ତକ ହୋଇ ରହିଲେ ଓ କହିଲେ, "ବାସ୍ତବିକ, ଅନ୍ୟର ମନ୍ତବ୍ୟ ଶୁଣି ଉତ୍ତେଜନାବଶତଃ କାର୍ଯ୍ୟ କରିବା କେତେ ଭୁଲ ହୋଇପାରେ ! ଚଳପୁ ! ମୋତେ କ୍ଷମା କର !"

ସେ ଚଳପୁଙ୍କୁ ସାଥିରେ ଧରି ପ୍ରାସାଦକୁ ଗଲେ । ବୃଦ୍ଧ ମନ୍ତ୍ରୀ ଅବସର ନେବା ପରେ ଚଳପୁ ହେଲେ ମନ୍ତ୍ରୀ ।






[୧୦]

[ଚିତ୍ରସେନ ଓ ଉଗ୍ରାକ୍ଷ ନିଜ ନିଜ ଅନୁଚରମାନଙ୍କ ସହାୟତାରେ କପିଳପୁର ଦୁର୍ଗ ଅବରୋଧ କଲେ ଓ ରାଜା ବୀରସିଂହଙ୍କୁ ବନ୍ଧନମୁକ୍ତ କଲେ । ବୀରସିଂହ ତାଙ୍କ କନ୍ୟା କାନ୍ତିମତୀଙ୍କୁ ପଚାରିଲେ, "ରାଜଦ୍ରୋହୀ ନାଗବର୍ମା କାହିଁ ?" ଚିତ୍ରସେନ କହିଲେ କି ତାଙ୍କୁ ବନ୍ଦୀ କରିବା ନିମନ୍ତେ ସେ ନିଜ ସେନାପତିଙ୍କୁ ପଠାଇଛନ୍ତି । ତା'ପରେ...]

ଚିତ୍ରସେନଙ୍କ ଉତ୍ତର ଶୁଣି ମହାରାଜା ବୀରସିଂହ ଆଶ୍ଚର୍ଯ୍ୟ ହେଲେ । ସେ ଥରେ ଉଗ୍ରାକ୍ଷ ଆଡ଼େ ଦୃଷ୍ଟିପାତ କରି ତା'ପରେ ସେ ଚିତ୍ରସେନଙ୍କୁ କହିଲେ, "ଚିତ୍ରସେନ, ରାକ୍ଷସ ଉଗ୍ରାକ୍ଷ ସହ ତୁମ ସମ୍ପର୍କ ଏତେ ନିବିଡ଼ ବୋଲି ମୁଁ ଜାଣି ନଥିଲି । ତୁମେ ନିଶ୍ଚୟ ଖୁବ୍ କ୍ଷମତାଶାଳୀ ବୋଲି ବୁଝୁଛି । ଆଗରୁ ଏକଥା ଜାଣିଥିଲେ ପ୍ରଥମରୁହିଁ ମୁଁ ତମ ସହାୟତା କାମନା କରି ଦୂତ ପଠାଇଥାନ୍ତି ।"

"ହଁ, ମହାରାଜ । ଉଗ୍ରାକ୍ଷ ମୋ ନିର୍ଦ୍ଦେଶରେ କାମ କରୁଛି । ତେବେ ଥରେ ଥରେ ସେ ଏପରି ଭାବରେ କଥାବାର୍ତ୍ତା କରେ ଯେପରି ସତେ ଅବା ସେ ମୋ ପ୍ରଭୁ!" ଚିତ୍ରସେନ ହସି ହସି କହିଲେ ।



ଉଗ୍ରାକ୍ଷ ପୁଣି କ'ଣ ବୁଝିଲା କେଜାଣି, ଖୁବ୍ ଉତ୍ସାହପୂର୍ଣ୍ଣ କଣ୍ଠରେ କହିଲା, "ମହାରାଜ! ମୁଁ ତ ସେହି ଶୁଭଦିନକୁ ଅପେକ୍ଷା କରିଛି ଯେଉଁଦିନ ଚନ୍ଦ୍ରସେନ ବିଭା ହୋଇ ରାଣୀ ସହ ନିଜ ଦୁର୍ଗକୁ ପ୍ରତ୍ୟାବର୍ତ୍ତନ କରିବେ!"

ଉଗ୍ରାକ୍ଷର ଏ ଅପ୍ରାସାଙ୍ଗିକ ଉତ୍ତର ଶୁଣି କାନ୍ତିମତୀଙ୍କ ମୁହଁ ଲଜ୍ଜାରେ ଲାଲ ପଡ଼ିଗଲା। ତେବେ ସେ ପ୍ରସଙ୍ଗରେ ଆଉ କେହି କିଛି କହିବା ପୂର୍ବରୁ ଦୁଇଜଣ ସୈନିକ ଧାଇଁସଇଁ ହୋଇ ଦୌଡ଼ି ଦୌଡ଼ି ଆସି ବୀରସିଂହଙ୍କୁ ଓ ଚନ୍ଦ୍ରସେନଙ୍କୁ ଅଭିବାଦନ ଜଣାଇ କହିଲେ, "ରାଜଦ୍ରୋହୀ ନାଗବର୍ମା ବିରାଟ ସୈନ୍ୟବାହିନୀ ଧରି ଆମ ଦୁର୍ଗ ଆଡ଼କୁ ମାଡ଼ି ଆସୁଛି!"

ବୀରସିଂହ ଏକଥା ଶୁଣି ଚମକି ଉଠିଲେ। ଚନ୍ଦ୍ରସେନଙ୍କ ମୁହଁରେ ବିସ୍ମୟ ଫୁଟି ଉଠିଲା। ତାଙ୍କ ମନ ସନ୍ଦେହାକୁଳ ହୋଇ ଉଠିଲା। ନାଗବର୍ମା କ'ଣ ତେବେ ଧବଳଗିରିରେ ବିଜୟଲାଭ କରି ଏଠାକୁ ଆସୁଛି?

ଚନ୍ଦ୍ରସେନ ଉଗ୍ରାକ୍ଷ ଆଡ଼କୁ ବୁଲିପଡ଼ି କହିଲେ, "ଉଗ୍ରାକ୍ଷ! ଯଦି ନାଗବର୍ମା ଧବଳ-ଗିରି ଉପରେ ଜୟଲାଭ କରି ଏଠାକୁ ଆସୁଥିବ, ତେବେ ତା'ର ବହୁତ ଦମ୍ଭ ବଢ଼ିବା ସଙ୍ଗେ ସଙ୍ଗେ ସୈନ୍ୟଦଳ ବି ବଢ଼ିଥିବ। ଯଦି ସେଠାରେ ପରାଜୟ ଲଭି ଏଠାକୁ ପଳାଇ ଆସୁଥିବ, ତେବେ ଆମ କାମ ସହଜ ହେବ। ବର୍ତ୍ତମାନ ଆମକୁ ଦୁର୍ଗରକ୍ଷାର ବ୍ୟବସ୍ଥା କରିବାକୁ ହେବ। ତମେ ଦୁର୍ଗର ପ୍ରାଚୀର ପାଖରେ ରୁହ। ଗମ୍ବୁଜ ଉପରେ କେତେକ ତୀରନ୍ଦାଜ ରହିବା ଆବଶ୍ୟକ। ଆଚ୍ଛା, ଅମରପାଳ କାହିଁ?"

"ସେ ଶତ୍ରୁ ସୈନ୍ୟଙ୍କ ସଂଖ୍ୟା ଆନ୍ଦାଜ କରିବା ନିମନ୍ତେ ନିଜେ ବଣ ଆଡ଼କୁ ଯାଇଛି।" ଜଣେ ଦୁଇଜଣ ସୈନିକ କହିଲେ।

"ଉଗ୍ରାକ୍ଷ! ତମେ ତମ ଅନୁଗତମାନଙ୍କ ସହ ଦୁର୍ଗ ଦ୍ୱାର..." ଚନ୍ଦ୍ରସେନଙ୍କ ବାକ୍ୟ ଶେଷ ହେବା ପୂର୍ବରୁ ଉଗ୍ରାକ୍ଷ ହସି ଉଠି କହିଲା, "ମହାରାଜ! ଦୁର୍ଗ ଦ୍ୱାର କ'ଣ ଆଉ ଗୋଟିଏ ଯୋଡ଼ିଏ ହୋଇ ରହିଛି? ଦୁର୍ଗ ଭିତରେ ପଶିବା ନିମନ୍ତେ ଆମ



ସୈନ୍ୟମାନେ ଭଲ ଭଲ ସ୍ଥାନରେ ପ୍ରାଚୀର ଭାଙ୍ଗି କେତେ ଦ୍ୱାର ସୃଷ୍ଟି କରିଛନ୍ତି ।"

ଚନ୍ଦ୍ରସେନ ଉଗ୍ରାକ୍ଷର ଏ କଥା ଶୁଣି ଚିନ୍ତିତ ଦେଖାଗଲେ । ସେ କହିଲେ, "ବାସ୍ତବିକ୍, ମୁଁ ଏ ସମସ୍ୟା ଭୁଲିଯାଇଥିଲି । ହଠାତ୍ ଧବଳଗିରି ଦଖଲ କରିସାରି ନାଗବର୍ମା ଏଠାରେ ଆସି ପହଞ୍ଚିଯିବ, ଏକଥା ବି ମୁଁ କଳ୍ପନା କରି ନଥିଲି ।"

ସେତିକିବେଳେ ଅମରପାଳ ଦୌଡ଼ି ଦୌଡ଼ି ଆସି ସେଠାରେ ପହଞ୍ଚିଗଲା ଓ କହିଲା, "ମହାରାଜ! ନାଗବର୍ମା ଧବଳଗିରି ଉପରେ ବିଜୟ ଲାଭ କରି ଆସୁଥିବା କଥା ଆପଣ ଯାହା ଭାବିଛନ୍ତି, ତାହା ଭୁଲ । ସେ ପରାଜିତ ହୋଇ ପଳାଇ ଆସୁଛି । ତା' ସହିତ କୌଣସି ବଡ଼ ଧରଣର ସୈନ୍ୟଦଳ ନାହିଁ । ଅସଲ କଥା ହେଲା, ତା' ପଛରେ ଯେଉଁ ସୈନ୍ୟ-ବାହିନୀ ଦେଖାଯାଉଛି, ତାହା ତାକୁ ଗୋଡ଼ାଇ ଗୋଡ଼ାଇ ଆସୁଥିବା ଆପଣଙ୍କ ପିତା ରାଜା ତାରକେଶ୍ୱରଙ୍କର ତଥା ଆପଣ ପଠାଇଥିବା ସୈନ୍ୟଦଳ ।"

ଅମରପାଳଠୁଁ ଏ ସମ୍ବାଦ ପାଇ ଉଗ୍ରାକ୍ଷ ଆନନ୍ଦରେ ନାଚିଗଲା । ଚନ୍ଦ୍ରସେନଙ୍କ ଆନନ୍ଦ ବି କହିଲେ ନ ସରେ । ସେ ଉତ୍ସାହରେ ଅମରପାଳଙ୍କୁ କହିଲେ, "ଅମରପାଳ, ତମେ ଆମର ସବୁ ସୈନିକଙ୍କୁ ଏକତ୍ର କରି ଠାଏଁ ଅପେକ୍ଷା କର । ସେ ରାଜଦ୍ରୋହୀକୁ ଉପଯୁକ୍ତ ଦଣ୍ଡ ଦେଇ ଆମକୁ ଏ ଅଶାନ୍ତିର ଶେଷ କରିବାକୁ ପଡ଼ିବ ।"

"ନାଗବର୍ମାକୁ ତା' ନିଜ ସୈନ୍ୟଦଳ ସହ ଦୁର୍ଗ ଭିତରକୁ ଆସିବାକୁ ବାଟ ଛାଡ଼ି ଦିଆଯାଉ । ଥରେ ସେ ଦୁର୍ଗ ଭିତରକୁ ଆସିଗଲେ ତା'ପରେ ତେଣିକି ତାକୁ ଜବଦ କରିବା ଆମପାଇଁ ସହଜ ହେବ ।" ଉଗ୍ରାକ୍ଷ କହିଲା ।

ଅମରପାଳ ହାତ ତାଳି ଦେଇ କହିଲା, "ମହାରାଜ! ଏହା ବଡ଼ ଚମତ୍କାର ପ୍ରସ୍ତାବ । ନାଗବର୍ମା ତା' ପଛରେ ଦୌଡ଼ୁଥିବା ଆମ ସୈନ୍ୟଦଳ କବଳରୁ ବର୍ତ୍ତିବା ନିମନ୍ତେ ଏଠାକୁ ପଳାଇ ଆସୁଛି । ସେ ଭାବୁଛି ଏ ଦୁର୍ଗ




ବର୍ତ୍ତମାନ ଯାଏ ତା' ପକ୍ଷର ସୈନ୍ୟଙ୍କ ଅଧିନରେ ରହିଛି । ଏ ଦୁର୍ଗ ଆମ ହାତରେ ପଡ଼ିଲାଣି ଜାଣିଲେ ସେ ଭିତରେ ନ ପଶି ଆଉ କୁଆଡ଼େ ପଳାଇବ ।"

"ଠିକ୍ କଥା । ଏହା ବେଶ୍ ଭଲ ଉପାୟ ।" ଚନ୍ଦସେନ ଏହା କହି ଅଳ୍ପ ସମୟ ଚିନ୍ତାମଗ୍ନ ରହିଲେ ଓ ତା'ପରେ ଉଗ୍ରାକ୍ଷ ଆଡ଼େ ଅନାଇ କହିଲେ, "ଆମେ ଥରେ ନାଗବର୍ମାଙ୍କୁ ଦୁର୍ଗ ଭିତରକୁ ପଶି ଆସିବାକୁ ଛାଡ଼ିଦେଲେ ତା'ପରେ ଦୁର୍ଗ ଅନ୍ତର୍ଗତ ରାଜପ୍ରାସାଦ ଭିତରକୁ ପଶିଆସି ତା' ସୈନ୍ୟମାନେ ଅନର୍ଥ ନ କରିବେ ବୋଲି କିଏ କହିବ ?"

"ମହାରାଜ, ସେତେବେଳକୁ କ'ଣ ହେବ, ଆପଣ ସେକଥା ବୁଝିବାର ଭାର ମୋ ଉପରେ ଛାଡ଼ି ଦିଅନ୍ତୁ । ଆପଣ ମୋ ରାକ୍ଷସ ବାହିନୀର ବଳ କଥା ଏଯାଏ ଭଲ ଭାବରେ ଠଉରାଇ ପାରି ନାହାନ୍ତି । ନାଗବର୍ମାଙ୍କୁ ଏଭଳି ଅବସ୍ଥାରେ ପାଇ ତାଙ୍କୁ ଛାଡ଼ି ଦେବାର ପ୍ରଶ୍ନ ଉଠୁନାହିଁ । ଯେମିତି ହେଲେ ବି ଆମେ ତାଙ୍କୁ ଶେଷ କରିବୁଁ । ନହେଲେ ଏ ମୁଲକରେ ଆମେ ଶାନ୍ତିରେ କ୍ଷଣେ ବି ରହିପାରିବୁଁ ନାହିଁ ।" ଗମ୍ଭୀର ଭାବରେ ଉଗ୍ରାକ୍ଷ କହିଲା ।

"ଉଗ୍ରାକ୍ଷ ! ତମେ ଠିକ୍ କହିଛ ।" ରାଜା ବୀରସିଂହ ରାକ୍ଷସ-ରାଜ ଆଡ଼େ ସପ୍ରଶଂସ ଭାବରେ ଅନାଇ ଏହା କହିଲେ । ତା'ପରେ ବୃଢ଼ପଟେ ଘେରି ଠିଆ ହୋଇଥିବା ସୈନିକମାନଙ୍କୁ ଅନାଇ କହିଲେ, "ବର୍ତ୍ତମାନ ତମ ଶକ୍ତି-ପରୀକ୍ଷାର ବେଳ । ନାଗବର୍ମା ସହ ବର୍ତ୍ତମାନ ଆମର ଅନ୍ତିମ ମୁକାବିଲା ହେବ । ଖାଲି ଆମ ରାଜ୍ୟର ଭବିଷ୍ୟତ ନୁହେଁ, ଆଖପାଖର କେତେଗୁଡ଼ିଏ ରାଜ୍ୟର ଶାନ୍ତି ଶୃଙ୍ଖଳା ଏହି ଯୁଦ୍ଧର ଫଳ କ'ଣ ହେବ ତାହାର ଉପରେ ନିର୍ଭର କରେ । ଶୁଣ । ଯିଏ ଦ୍ରୋହୀ ନାଗ-ବର୍ମାଙ୍କୁ ବନ୍ଦୀ ବନାଇ ଜୀବନ୍ତ ମୋ ଆଗକୁ ଆଣି ପାରିବ, ତାକୁ ମୁଁ ମୋ ରାଜ୍ୟର ଏକ ଅଂଶ ଦେବି । ଯିଏ ତା' ମୁଣ୍ଡ ଆଣି ଦେଖାଇବ, ତାକୁ ଦେବି ଦଶ ସହସ୍ର ସ୍ୱର୍ଣ୍ଣ ମୁଦ୍ରା ।"

"ରାଜ୍ୟର ଅଂଶ ଦେଇ ଦେବେ!" ରାଜକୁମାରୀ କାନ୍ତିମତୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ହଁଅ! ନାଗବର୍ମା ମୋତେ କେତେ କଷ୍ଟ ଦେଲଣି, ସେକଥା ତୋତେ ସହଜରେ ବୁଝାଇ ପାରିବି ନାହିଁ । ରାଜ୍ୟ ଯାକ ତା' ପାଇଁ ଯେତେ ଅଶାନ୍ତି ହେଲଣି, ସେକଥା ଛାଡ଼ । ମୋ ଭଳି ଜଣେ ରାଜାକୁ ମୋ ନିଜ ପ୍ରାସାଦ ଭିତରେ ବନ୍ଦୀ କରି ପକାଇ ରଖିବ, ତାହାଠୁଁ ବଳି ଅପମାନ ମୋ ପାଇଁ କ'ଣ ହୋଇପାରେ? ଏ ଅପମାନର ପ୍ରତିଶୋଧ ନେବା ମୋ ଧର୍ମ । ଯଦି ସେ ବାଟରେ କେହି ମୋତେ ପ୍ରକୃତ ସାହାଯ୍ୟ କରିପାରେ, ତେବେ ଖାଲି ରାଜ୍ୟର ଏକ ଅଂଶ କାହିଁକି, ଆହୁରି ଅଧିକା କିଛି ଦେବାକୁ ମଧ୍ୟ ମୁଁ ପ୍ରସ୍ତୁତ ।" ବୀରସିଂହ କହିଲେ ।




ଚନ୍ଦ୍ରସେନ କହିଲେ, "ଆମକୁ ବହୁତ ସତର୍କ ଭାବରେ କାମ କରିବାକୁ ହେବ । ଦୁର୍ଗ ଭିତରେ ଆମେ ଅଛୁଁ, ଏକଥା ନାଗବର୍ମା କୌଣସି ମତେ ଜାଣି ପାରିଲେ କଥା ସରିଲା । ସେ ଦୁର୍ଗରେ ନିଃସନ୍ଦେହ ମନରେ ପ୍ରବେଶ କରିବା ମାତ୍ରେ ହଠାତ୍ ତା' ଉପରେ ଚଢ଼ାଉ କରିବାକୁ ହେବ । ସେ ଜୀବିତ ଧରା ପଡ଼ିବ କି ମରିବ, ସେକଥା ସେତେବେଳକୁ ଦେଖାଯିବ ।"

"ମହାରାଜ, ଚିନ୍ତା ନାହିଁ । ମୁଁ ଓ ଅମରପାଳ ଯାହା କରିବାର କରିବୁଁ । ଆପଣ, ମହାରାଜା ଏବଂ ରାଜକୁମାରୀ ମହଲ ଭିତରେ ଛପି ରହି ଆମ ପରାକ୍ରମ ଏବଂ କୌଶଳ ଦେଖନ୍ତୁ ।" ଉଗ୍ରାକ୍ଷ କହିଲା ଓ ସଙ୍ଗେ ସଙ୍ଗେ ତା' ସୈନିକମାନଙ୍କୁ ଡାକି ଦେଲା ।

ଅମରପାଳ ଓ ଉଗ୍ରାକ୍ଷର ନିର୍ଦ୍ଦେଶରେ ସୈନିକ ଓ ରକ୍ଷୀମାନେ ଦୁର୍ଗ ଭିତରେ କୋଠରୀମାନଙ୍କରେ ତଥା ଦୁର୍ଗ ବାହାରେ ଗଛ ସବୁ ଉପରେ ଲୁଚି ରହିଲେ । ନାଗବର୍ମା ଦୁର୍ଗ ଆଗରେ ଥିବା ବଣ ଭିତରେ ପ୍ରବେଶ କଲା । ଘୋଡ଼ା ଉପରୁ ଦୁର୍ଗ ଶିଖରକୁ ଦୃଷ୍ଟିପାତ କରି ସେ କହିଲା, "କରବୀର! ମନେ ହୁଏ, ଶତ୍ରୁ ଆସି ଏ ଦୁର୍ଗ ଆକ୍ରମଣ କରି ପୁଣି ପଳାଇ ଯାଇଛି!"



ନାଗବର୍ମା ଯାହାକୁ ସମ୍ବୋଧନ କରି ଏକଥା କହିଲା, କରବୀର ନାମଧାରୀ ସେ ବ୍ୟକ୍ତି ହେଲା ବ୍ୟାଘ୍ରଚର୍ମଧାରୀଙ୍କ ସର୍ଦ୍ଦାର। ସେ ନାଗବର୍ମା ସହ ଯୋଗ ଦେଇ ଧବଳଗିରି ଆକ୍ରମଣ କରିବାକୁ ଯାଇଥିଲା। ଉଭୟେ ସେଠାରେ ପରାଜୟ ଲଭି ସେଠାରୁ ପଳାଇ ଆସିଥିଲେ।

କରବୀର କହିଲା, "ହଁ ମହାରାଜ! ମନେ ହୁଏ ଶତ୍ରୁପକ୍ଷ ଆମେ ଏଠାରେ ଯେଉଁ କେତେଜଣ ସୈନିକ ରଖିଯାଇଥିଲୁଁ ସେମାନଙ୍କୁ ମାରି ପକାଇ ପୁଣି ଏଠାରୁ ଚାଲିଯାଇଛନ୍ତି। ମୁଁ ମୋର ଯେଉଁ ଦୁଇଜଣ ଲୋକଙ୍କୁ ଓ ଦୁଇ ଭୟଙ୍କର ପକ୍ଷୀଙ୍କୁ ଏଠାରେ ରଖିଯାଇଥିଲି, ସେମାନଙ୍କୁ ମଧ୍ୟ ଦେଖୁନାହିଁ। ଏହା ବାସ୍ତବିକ ଆଶ୍ଚର୍ଯ୍ୟ କଥା।"

"ଆଉ ଗୋଟାଏ ପ୍ରଶ୍ନ ମୋ ମନକୁ ଆସୁଛି। ଦୁର୍ଗର ଗୋଟାଏ ଅନ୍ଧକାର କୋଠରି ଭିତରେ ଆମେ ରାଜା ବୀରସିଂହଙ୍କୁ ବନ୍ଦୀ କରି ପକାଇ ଦେଇ ଯାଇଥିଲୁଁ। ଶତ୍ରୁମାନେ ତାଙ୍କ ସନ୍ଧାନ ପାଇ ଯଦି ତାଙ୍କୁ ମୁକ୍ତ କରି ନେଇଯାଇଥିବେ, ତେବେ ବିପଦର ଆଶଙ୍କା ଅଛି। ବର୍ତ୍ତମାନ ଆମେ ଦୁର୍ଗ ଭିତରକୁ ଯାଇ ଦୁର୍ଗକୁ ମଜବୁଦ କରିବା। ଆମକୁ ଅନୁସରଣ କରୁଥିବା ଧବଳଗିରିର ସୈନ୍ୟବାହିନୀ ଆସି ପହଞ୍ଚିବା ପୂର୍ବରୁହିଁ ଆମେ ଦୁର୍ଗର ପ୍ରବେଶପଥ ବନ୍ଦ କରିବା ଦରକାର।" ନାଗବର୍ମା କହିଲା।

ତା'ପରେ ଉଭୟ ନାଗବର୍ମା ଓ କରବୀର ସର୍ଦ୍ଦାର ନିଜ ନିଜ ଅନୁଚରବର୍ଗଙ୍କୁ ଆହ୍ୱାନ କରି କହିଲେ, "ଶତ୍ରୁଦଳ ଆମ ପଛରେ ଆସୁଛନ୍ତି। ଆମେ ଥରେ କପିଳପୁର ଦୁର୍ଗ ଭିତରେ ପଶିଗଲେ ତେଣିକି ନିରାପଦ। ଶୀଘ୍ର ଚାଲ!"

ଏହାପରେ ନାଗବର୍ମା ଓ କରବୀର ଘୋଡ଼ା ଛୁଟାଇ ତୁରନ୍ତ ଆଗକୁ ଚାଲିଗଲେ। କେତେଜଣ ଘୋଡ଼ସବାର ସେମାନଙ୍କ ପଛେ ପଛେ ଧାବମାନ ହେଲେ। ଚାଲିଥିବା ସୈନିକମାନେ ପ୍ରାଣମୂର୍ଚ୍ଛା ଦୌଡ଼ି ଦୌଡ଼ି ସେମାନଙ୍କ ପଛରେ ଗଲେ।

ଅଳ୍ପ ସମୟ ଭିତରେ ସେମାନେ ଦୁର୍ଗ ଦ୍ୱାରରେ ପହଞ୍ଚିଲେ । ସୈନିକମାନଙ୍କୁ ଅଟକାଇ ନାଗବର୍ମା ଓ କରବୀର ଫାଟକ ଭିତରେ ଦେଇ ଧିରେ ଧିରେ ଅଗ୍ରସର ହେଲେ । ଦୁର୍ଗ ଭିତରଟା ମରୁଭୂମି ଭଳି ଲାଗୁଥାଏ ! ଶୁଖିଲା ପତ୍ରଟିଏ ପଡିବାର ଶବ୍ଦ ମଧ୍ୟ ଶୁଣି ହେବ—ଏପରି ନୀରବତା ବିରାଜୁଥାଏ ।

"କରବୀର! ଆମେ ଶତ୍ରୁପକ୍ଷର ଯନ୍ତା ଭିତରକୁ ପଶି ଯାଉନାହୁଁ ତ ?" ନାଗବର୍ମା ସନ୍ଦେହ ପ୍ରକଟ କରି କହିଲା ।

"ଆଜ୍ଞା ! ଆମ ପାଇଁ ଯନ୍ତା ବସାଇବାରେ କାହାର ବା ଆଗ୍ରହ ଥିବ ? ଦୁର୍ଗ ଲୁଣ୍ଠନ କରି ଶତ୍ରୁପକ୍ଷ ସବୁ ନେଇ ଯାଇଥିବେ । ହୁଏତ ବୀରସିଂହଙ୍କୁ ବି ମୁକୁଳାଇ ଦେଇଥିବେ !" କରବୀର କହିଲା ।

"କିନ୍ତୁ ଆମ ସୈନିକମାନେ ଯଦି ମରିଛନ୍ତି, ତେବେ ସେମାନଙ୍କ ମୃତଦେହ କାହିଁ ? ରାକ୍ଷସ ଉଗ୍ରାକ୍ଷ ଆସି ଏଠି ପହଞ୍ଚି ନାହିଁ ତ ?" ନାଗବର୍ମା କହିଲା ।

ଉଗ୍ରାକ୍ଷ ପ୍ରସଙ୍ଗ ପଡ଼ିବା ମାତ୍ରେ କରବୀର ଓ ତା' ଅନୁଚରମାନଙ୍କ ମୁହଁ ଶେତା ପଡିଗଲା । ସେମାନେ ଯେ ରାକ୍ଷସଙ୍କୁ ଭୟ କରୁଥିଲେ, ଏଥିରେ ସନ୍ଦେହ ନାହିଁ । ସେ ଟିକିଏ ଇତସ୍ତତଃ କରି କହିଲା, "ଆମକୁ ପଛରୁ ଆସୁଥିବା ସୈନ୍ୟଦଳଠୁଁ ଆତ୍ମରକ୍ଷା କରିବାକୁ ହେବ । ଏଠାରେ ଅଧିକ ସମୟ ବାହାରେ ରହିଲେ ଭଲକଥା ନାହିଁ । ଦୁର୍ଗ ଭିତରକୁ ଯିବା ଆବଶ୍ୟକ । ତେବେ ଦୁର୍ଗ ଭିତରେ ଯଦି ଶତ୍ରୁ ଲୁଚି ରହିଥିବ, ତେବେ ବି ବିପଦ । ଆମ ଆଗରେ ଗୋଟିଏ ଉପାୟ । ଆମ ଅନୁଚରମାନେ ପ୍ରଥମେ ଦୁର୍ଗ ଭିତରେ ସବୁଆଡ଼େ ତନ୍ନ ତନ୍ନ କରି ଦେଖନ୍ତୁ । ଯଦି ଶତ୍ରୁପକ୍ଷର କେହି ନଥିବେ, ତେବେ ଆମେ ପ୍ରବେଶ କରିବା ।"

(କ୍ରମଶଃ)






# ପ୍ରତିଶ୍ରୁତି

ନିଶା ଗରଜୁଥାଏ । ହୁହାଙ୍କୁ ହୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ ତାଙ୍କୁ କହିଲା, "ରାଜା! ଏଇ ଦୁଃସାହସିକ କାମରେ ତମର କେହି ସହଯୋଗୀ ବା ପ୍ରେରଣାଦାତା ଥିବେ ପରା! ସେ ବ୍ୟକ୍ତି ନିଶ୍ଚେ ଏଥିରୁ କିଛି ଲାଭ

## ବେତାଳ କଥା



ଆଶା କରୁଛି । କିନ୍ତୁ ଯଦି ଏ କାମରେ ତମେ ସିଦ୍ଧିଲାଭ କର, ସେ ବ୍ୟକ୍ତି ପ୍ରତି ତମେ ବିଶ୍ୱସ୍ତ ରହିବ, ଏକଥା ତମେ କିପରି ନିଶ୍ଚିତ ଭାବରେ କହିପାରିବ କି ? ମଣିଷଙ୍କ ଆଚରଣ ବିଷୟରେ କିଛି କହିବା ସହଜ ନୁହେଁ । ତମକୁ ମୋ ବକ୍ତବ୍ୟ ବୁଝାଇବା ନିମନ୍ତେ ଗୋଟାଏ ଦୃଷ୍ଟାନ୍ତ ଦେଉଛି । ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲଘୁ ମନେ ହେବ ।"

ବେତାଳ ଗପିଲା: ପ୍ରତିଷ୍ଠାନ ନାମକ ସୁପ୍ରାଚୀନ ନଗରୀରେ ରହୁଥିଲେ ତିନିଜଣ ବଣିକ । ସେମାନଙ୍କ ନାମ ଜୟେନ୍ଦ୍ର, ସୋମେନ୍ଦ୍ର ଏବଂ ଶିବଦାସ । ସେମାନେ ଅଲଗା ଅଲଗା ବେପାର କରୁଥିଲେ, କିନ୍ତୁ ସାଧାରଣତଃ ଦୂରସ୍ଥାନମାନଙ୍କୁ ଏକା ସାଙ୍ଗରେ ଯିବା ଆସିବା କରୁଥିଲେ ।

ଥରେ ଏକତ୍ର ସେମାନେ ସିଂହପୁର ଅଭିମୁଖେ ଗଲେ । ପ୍ରତିଷ୍ଠାନର ପ୍ରସିଦ୍ଧ ହୀରା ଖଣିରୁ ସେମାନେ କେତେକ ହୀରା ସଂଗ୍ରହ କରି ବିକିବାକୁ ଯାଉଥିଲେ ।

ଦୁଇମାସ ପରେ ଯେତେବେଳେ ଜୟେନ୍ଦ୍ର ଓ ସୋମେନ୍ଦ୍ର ପ୍ରତିଷ୍ଠାନକୁ ଫେରି ଆସିଲେ, ଦେଖାଗଲା ସେମାନଙ୍କ ସହ ତୃତୀୟ ଯାତ୍ରୀ ଶିବଦାସ ନାହାନ୍ତି ।

ଦୁଇବନ୍ଧୁ ଅଶ୍ରୁମୋଚନ କରି ଶିବଦାସଙ୍କ ଦୁର୍ଭାଗ୍ୟ ବର୍ଣ୍ଣନା କଲେ । ତିନିହେଁ ଲେଉଟାଣି ବାଟରେ ଗୋଟିଏ ବଣ ଭିତରେ ବିଶ୍ରାମ କରୁଥିବା ବେଳେ ଶିବଦାସ ବାଘ ହାବୁଡ଼ରେ ପଡି ଜୀବନ ଦେଇଥିଲେ । ସିଂହପୁରର ଜଣେ ବଣିକ ବାଲି ଓ ସୁମାତ୍ରା ଅଭିମୁଖେ ଜଳଯାତ୍ରା କରୁଥିଲେ । ଶିବଦାସ ତାଙ୍କ ହୀରାତକ ସେହି ବଣିକଙ୍କୁ ଦେଇଥିଲେ । ବଣିକ ସେସବୁ ଦୂର ଦ୍ୱୀପରେ ବିକି କରିବା ପରେ ତା'ର ମୂଲ୍ୟ ଶିବଦାସଙ୍କୁ ଦେବେ ବୋଲି କଥା ହୋଇଥିଲା । ଶିବଦାସ ପ୍ରଚୁର ଲାଭ ଆଶା କରୁଥିଲେ ଓ ପରବର୍ତ୍ତୀ ବର୍ଷ ସିଂହପୁର ଯାଇ ବଣିକଙ୍କଠୁଁ ଟଙ୍କା ଆଣିବାର ଯୋଜନା କରିଥିଲେ ।

କିନ୍ତୁ ହାୟ ! ଶିବଦାସ ଏତେ ଶୀଘ୍ର କାଳ କବଳରେ ପଡି ଇହଧାମରୁ ବିଦାୟ ନେବେ, ଏକଥା କିଏ ଜାଣିଥିଲା !



ଶିବଦାସଙ୍କ ପତ୍ନୀ ଓ ଛୋଟ ଛୋଟ ଶିଶୁମାନେ ସମସ୍ତେ ବହୁତ କାନ୍ଦିଲେ । ଜୟେନ୍ଦ୍ର ଓ ସୋମେନ୍ଦ୍ର ପରଥର ସିଂହପୁର ଗଲେ ବାଲିଦ୍ୱୀପ ଅଭିମୁଖେ ଯାତ୍ରା କରିଥିବା ସେ ବଣିକଙ୍କଠାରୁ ଶିବଦାସଙ୍କ ସବୁତକ ପ୍ରାପ୍ୟ ଆଦାୟ କରି ଆଣିବାର ପ୍ରତିଶ୍ରୁତି ଦେଲେ ।

ଜୟେନ୍ଦ୍ରଙ୍କର ସୁନ୍ଦରୀ କନ୍ୟାଟିଏ ଥିଲା । ସୋମେନ୍ଦ୍ରଙ୍କର ଥିଲା ପୁଅଟିଏ । ନାମ ପ୍ରଣବ । ସେ ବାପାଙ୍କଠୁଁ ବେପାର ବଣିଜ ଶିକ୍ଷା କରୁଥାଏ ।

ପ୍ରଣବ ଦେଖିଲା, ତା' ବାପାଙ୍କ ସ୍ୱାସ୍ଥ୍ୟ ଭଲ ରହୁନାହିଁ । ସେ କ୍ରମେ କ୍ରମେ ବେପାରର ସବୁ ଦାୟିତ୍ୱ ନିଜ କାନ୍ଧକୁ ନେଇଗଲା ।

ବୈଦ୍ୟ ଓ ଆତ୍ମୀୟ ସ୍ୱଜନଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ସୋମେନ୍ଦ୍ରଙ୍କ ସ୍ୱାସ୍ଥ୍ୟରେ ଅବନତି ହେବାକୁ ଲାଗିଲା । ଦିନେ ସେ ପ୍ରଣବକୁ ନିଜ ଶେଯ ପାଖକୁ ଡାକି କହିଲେ, "ପୁଅ! ମୋର ବୋଧହୁଏ ଆଉ ଅଧିକ କାଳ ବଞ୍ଚିବାର ଯୋଗ ନାହିଁ ।..." ସେ ବହୁତ କଷ୍ଟରେ ପୁଣି କହିଲେ, "ଜୟେନ୍ଦ୍ର ମୋତେ ସେ ଅର୍ଥରୁ ଅଧା ଦେବାର କଥା..."

ଏହା ପରେ ସେ ଯାହା କହିଲେ, ତାହା ଦୁର୍ବୋଧ ରହିଗଲା । ମୋଟାମୋଟି ଭାବରେ ପ୍ରଣବ ଏତିକି ବୁଝିଲା ଯେ ଜୟେନ୍ଦ୍ର ଯାହା ଦେବେ, ତାହା ସେ ନିଜେ ନ ରଖି ସିଧା-ସଳଖ ନେଇଯାଇ ଶିବଦାସଙ୍କ ପତ୍ନୀଙ୍କୁ ଦେଇଦେବା ଠିକ୍ ହେବ ।

"ବାପା! ଶିବଦାସଙ୍କ ପରିବାର କେତେ କଷ୍ଟରେ ଚଳୁଛନ୍ତି, ସେକଥା ମୁଁ ଜାଣେ । ମୁଁ ଆପଣଙ୍କ ନିର୍ଦ୍ଦେଶ ଅନୁସାରେ କାମ କରିବି ।" ପ୍ରଣବ କହିଲା ।

ସୋମେନ୍ଦ୍ର ଏହାପରେ ଚିରଦିନ ପାଇଁ ଆଖି ବନ୍ଦ କଲେ ।

ପ୍ରଣବ ବାପାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ଯଥାବିଧି ସମାପନ କଲା । ଦିନେ ସେ ଜୟେନ୍ଦ୍ରଙ୍କୁ ଏକାନ୍ତରେ ପଚାରିଲା, "ଆଜ୍ଞା, ବାପାଙ୍କର ଆପଣଙ୍କଠାରୁ କୌଣସି ବ୍ୟାପାରରେ ଯେଉଁ ଅଧା ଅର୍ଥ ପ୍ରାପ୍ୟ ଥିଲା, ତାହା ସେ




ଶିବଦାସଙ୍କ ପତ୍ନୀଙ୍କୁ ଦେବାକୁ ନିର୍ଦ୍ଦେଶ ଦେଇଯାଇଛନ୍ତି ।"

ଜୟେନ୍ଦ୍ର ଚମକି ଉଠିଲେ ଓ ଟିକିଏ ବିରକ୍ତ ଦେଖାଗଲେ । ସେ କହିଲେ, "ତମ ବାପାଙ୍କର ମୋଠୁଁ କ'ଣ ପ୍ରାପ୍ୟ ଥିଲା ମୋର କାହିଁ ମନେ ପଡୁନାହିଁ । ଆମେ ଏକା ସାଙ୍ଗରେ ଯିବା ଆସିବା କରୁଥିଲୁଁ । କେତେବେଳେ ପାନ୍ଥଶାଳାର ପ୍ରାପ୍ୟ ବା ଯାନବାହନ ଭଡ଼ା ସିଏ ଦେଉଥିଲେ ତ କେତେବେଳେ ମୁଁ ଦେଉଥିଲି । ସେ ବାବଦରେ ତାଙ୍କ ହିସାବ ଅନୁସାରେ ଯଦି କିଛି ପ୍ରାପ୍ୟ ଥିବ, ତାହା ବିଶେଷ କିଛି ନୁହେଁ । ତମେ ସେ କ'ଣ କହୁଥିଲେ ଠିକ୍ ବୁଝିଛ ତ ?"

"ମଉସା! ମୁଁ ଠିକ୍ ବୁଝିଛି ବୋଲି କହିପାରିବି ନାହିଁ । ବାପା ସ୍ପଷ୍ଟ ଭାବରେ ବୁଝାଇ କହିବା ଭଳି ଅବସ୍ଥାରେ ନଥିଲେ ।" ପ୍ରଣବ କହିଲା ।

ସେ ଜୟେନ୍ଦ୍ରଠୁଁ କିଛି ନ ପାଇବା ସତ୍ତ୍ୱେ ଶିବଦାସଙ୍କ ପରିବାରକୁ ନାନା ମତେ ସାହାଯ୍ୟ କରିବାକୁ ଲାଗିଲା ।

ଏହାର ଛଅମାସ ପରେ ଜୟେନ୍ଦ୍ର ବେପାର ପାଇଁ ସିଂହପୁର ଅଭିମୁଖେ ବାହାରିଲେ । ପ୍ରଣବ ତାଙ୍କ ସହ ଯିବାକୁ ପ୍ରସ୍ତୁତ ହେଲା । ଏଥର ବି ଦୁହେଁ ହୀରା ନେଇ ଗଲେ ।

ବଣ ଭିତର ଦେଇ ଗଲାବେଳେ ଦୁହେଁ ଜଣେ ସାଧୁଙ୍କ ଆଶ୍ରମରେ ରାତି ଯାପନ କଲେ । ବଣ ସୀମାନ୍ତରେ ଥିବା ଗୋଟିଏ ଗାଁରେ କୌଣସି ସଂକ୍ରାମକ ବ୍ୟାଧି ଯୋଗୁଁ ଲୋକେ ବିପନ୍ନ ହୋଇଥାନ୍ତି । ସାଧୁ ଓ ତାଙ୍କ ଶିଷ୍ୟବର୍ଗ ସେ ଗାଁକୁ ନାନାବିଧ ଔଷଧ ଓ ଖାଦ୍ୟ ଦ୍ରବ୍ୟ ଯୋଗାଇବାରେ ବ୍ୟସ୍ତ ଥା'ନ୍ତି । ଉଭୟ ଜୟେନ୍ଦ୍ର ଓ ପ୍ରଣବ ସାଧୁଙ୍କ ଦାତବ୍ୟ ପାଣ୍ଠିକୁ କିଛି କିଛି ଚାନ୍ଦା ଦେଲେ ଓ ପରଦିନ ଗନ୍ତବ୍ୟ ପଥରେ ଯାତ୍ରା କଲେ । ବଣ ପରେ ନଈ । ସେମାନେ ଗୋଟିଏ ନୌକା ଭଡ଼ା କଲେ ଓ ପନ୍ଦରଦିନ ଜଳଯାତ୍ରା ପରେ ସିଂହପୁରରେ ପହଞ୍ଚି ଗୋଟିଏ ପାନ୍ଥଶାଳାରେ ରହିଲେ ।

ପରସ୍ପର ବୁଝାମଣା ଅନୁସାରେ ଦୁହେଁ ସହରର ଦୁଇ ଦିଗକୁ ହୀରା ବିକିବାକୁ ଗଲେ ।



ମହୀନ୍ଦ୍ରପୁରର ରାଜାଙ୍କର ସେ ସହରରେ ଗୋଟିଏ କୋଠି ଥାଏ । ପ୍ରଣବ ସେଠାକୁ ଯାଇ ରାଜାଙ୍କୁ ତା ହୀରା ଦେଖାଇଲା । ରାଜା ହସି କହିଲେ, "କି ଯୋଗାଯୋଗ ! ଗତବର୍ଷ ମୁଁ ଏଠିକି ଆସିଥିବା ବେଳେ ବି ପ୍ରତିଷ୍ଠାନରୁ ଜଣେ ହୀରା ବେପାରୀ ଆସିଥାନ୍ତି । କିନ୍ତୁ ସେ ଯେଉଁ ହୀରା ଆଣିଥିଲେ, ସେମିତି ହୀରା ମୁଁ ଜୀବନରେ ଦେଖି ନଥିଲି । ସେଥିପାଇଁ ତାଙ୍କୁ ମୁଁ ସବୁଠାରୁ ଅଧିକ ମୂଲ୍ୟ ବି ଦେବାକୁ କୁଣ୍ଠା ବୋଧ କରି ନଥିଲି ।"

ପ୍ରଣବ ରାଜାଙ୍କୁ କେଇଖଣ୍ଡି ହୀରା ବିକିଲା ଓ ପାନ୍ଥଶାଳାକୁ ଲେଉଟିଗଲା ।

"ମଉସା ! ଆପଣ ମହୀନ୍ଦ୍ରପୁର ରାଜାଙ୍କୁ କିଛି ହୀରା ବିକ୍ରି କରିଥିଲେ କି ?" ସନ୍ଧ୍ୟା ବେଳେ ପ୍ରଣବ ଜୟେନ୍ଦ୍ରଙ୍କୁ ପଚାରିଲା ।

"ନା ତ ! କାହିଁକି ?" ଜୟେନ୍ଦ୍ର ପଚାରିଲେ ।

"ମୁଁ ତାଙ୍କୁ କେଇ ଖଣ୍ଡ ହୀରା ବିକିଲି । ମୋର ମନେ ହେଲା ସେ ଖୁବ୍ ଭଲ ଲୋକ ।" ପ୍ରଣବ କହିଲା ।

ପରଦିନ ପ୍ରଣବ ଜୟେନ୍ଦ୍ରଙ୍କୁ କହିଲା, "ମଉସା, ଶିବଦାସଜୀ ଯେଉଁ ବଣିକ ଜିମା ତାଙ୍କ ହୀରାତକ ଦେଇଥିଲେ, ଆମେ ତାଙ୍କୁ ଭେଟି ଶିବଦାସଜୀଙ୍କ ପ୍ରାପ୍ୟ ଅଦାୟ କରିବା ନାହିଁ ?"

"ମୁଁ ଖବର ନେଇଛି । ସେ ବଣିକ ଫେରି ନାହାନ୍ତି କି ଫେରିବାର ଆଶା ନାହିଁ । ତାଙ୍କ ବେପାର ପ୍ରାୟ ବୁଡି ଯାଇଛି । ଶିବଦାସ ତାଙ୍କୁ ହୀରାତକ ହସ୍ତାନ୍ତର କରିବା ଠିକ୍ ହୋଇ ନାହିଁ ।" ଜୟେନ୍ଦ୍ର କହିଲେ ।

ଦଶଦିନ ପରେ ସେମାନେ ସିଂହପୁର ଛାଡିଲେ । ପନ୍ଦର ଦିନର ଜଳଯାତ୍ରା ଶେଷ କରି ସେମାନେ ବଣରେ ପଶିଲେ । ସନ୍ଧ୍ୟା ବେଳକୁ ସେମାନେ ସେହି ଆଶ୍ରମରେ ପହଞ୍ଚି ବିଶ୍ରାମ ନେଲେ । ପରଦିନ ଜୟେନ୍ଦ୍ର ପ୍ରଣବକୁ କହିଲେ, "ମୁଁ ଗୋଟିଏ ମନ୍ଦିରକୁ ଯିବି । ମାନସିକ ଅଛି । ଏକା ଯିବାହିଁ ବିଧି ।"

ପ୍ରଣବ ସେଥିରେ ଆପତ୍ତି କଲା ନାହିଁ । କିନ୍ତୁ ସେ କୌତୂହଳ ଦମନ କରି ନପାରି ଜୟେନ୍ଦ୍ରଙ୍କୁ ଗୋପନରେ ଅନୁସରଣ କଲା ।



କୌଣସି ମନ୍ଦିରକୁ ନଯାଇ ଜୟେନ୍ଦ୍ର ଗୋଟିଏ ପାହାଡ଼ ଆଡ଼େ ଗଲେ । ସେ ପାହାଡ଼ର ଗୋଟିଏ ଗର୍ତ୍ତ ମୁହଁରୁ ଖଣ୍ଡିଏ ପଥର ଅପସାରଣ କରିବାକୁ ଚେଷ୍ଟା କଲେ । ପ୍ରଣବ ଆଶ୍ଚର୍ଯ୍ୟ ହୋଇ ତାଙ୍କ କାର୍ଯ୍ୟ କଳାପ ଲକ୍ଷ୍ୟ କରୁଥାଏ । ହଠାତ୍ ଜୟେନ୍ଦ୍ର ଚିତ୍କାର କରି ତଳେ ପଡ଼ିଗଲେ । ପ୍ରଣବ ଆତଙ୍କିତ ଭାବରେ ଲକ୍ଷ୍ୟ କଲା, ଗୋଟାଏ ନାଗ ସାପ ବିଜୁଳି ବେଗରେ ବୁଦା ଆଢୁଆଳରେ ଲୁଚି ଯାଉଛି !

ଜୟେନ୍ଦ୍ର ଯନ୍ତ୍ରଣାରେ ଛଟପଟ ହେଉଥାନ୍ତି । ପ୍ରଣବ କ'ଣ କରିବ ପ୍ରଥମେ ଠଉରାଇ ପାରିଲା ନାହିଁ । କିନ୍ତୁ ଯେତେବେଳେ ଜୟେନ୍ଦ୍ର ଆର୍ତ୍ତ-କଣ୍ଠରେ ପାଣି ଚାହିଁଲେ, ସେତେବେଳେ ସେ ଆଉ ଲୁଚି ରହି ପାରିଲା ନାହିଁ । ପାଖରେ ଗୋଟିଏ ଝରଣା ଥିଲା । ସେ ପତ୍ର ଠୁଙ୍ଗାଟିଏ ପ୍ରସ୍ତୁତ କରି ସେଥିରେ ପାଣି ନେଇଯାଇ ଜୟେନ୍ଦ୍ରଙ୍କୁ ଦେଲା ।

ଜୟେନ୍ଦ୍ର ଢୋକେ ମାତ୍ର ପାଣି ପିଇଲେ, କିନ୍ତୁ ତାଙ୍କ କଣ୍ଠସ୍ୱର ଓ ଦୃଷ୍ଟି କ୍ଷୀଣ ହୋଇ ଆସୁଥାଏ । ସେ ଜଡ଼ିତ କଣ୍ଠରେ କହିଲେ, "ପୁଅ ! ଏ ପାପୀ ଏବେ ମରିବ । ଏ ଗର୍ତ୍ତ ଭିତରେ ଟଙ୍କା ଅଛି । ନେଇ ଯା···"

ସେ ଆହୁରି କିଛି କହିବା ପାଇଁ ଅତି ବ୍ୟାକୁଳ ଭାବରେ ଚେଷ୍ଟା କରୁଥିଲେ, କିନ୍ତୁ କହିପାରିଲେ ନାହିଁ । ପ୍ରଣବ ଖାଲି କେତୋଟି ଶବ୍ଦ ବୁଝି ପାରିଲା : ମୋ ଝିଅ···ତା' ବିବାହ···ମୋ ବୋଝ···ଏ ଅର୍ଥ···"

"ମଉସା ! ଆପଣ ଚିନ୍ତା କରନ୍ତୁ ନାହିଁ । ଆପଣଙ୍କ କନ୍ୟାର ବିବାହ ଯେପରି ସୁରୁଖୁରୁରେ ହୁଏ, ସେ ଦାୟିତ୍ୱ ମୋର ।" ପ୍ରଣବ କହିଲା ।

ମୁହୂର୍ତ୍ତକ ପାଇଁ ଜୟେନ୍ଦ୍ରଙ୍କ ମୁଖମଣ୍ଡଳ ଉଜ୍ଜ୍ୱଳ ଦେଖାଗଲା । ତା'ପରେ ସେ ମୃତ୍ୟୁ ବରଣ କଲେ ।

ପ୍ରଣବ କିଛି ସମୟ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସି ରହିଲା । ତା'ପରେ ସେ ଈଶ୍ୱରଙ୍କୁ ପ୍ରାର୍ଥନା କରି ଆଶ୍ରମକୁ ଦୌଡ଼ିଯାଇ ସାଧୁଙ୍କୁ ସବୁ କହିଲା । ସାଧୁଙ୍କ ନିର୍ଦ୍ଦେଶରେ ତାଙ୍କ



ଶିଷ୍ୟମାନେ ଜୟେନ୍ଦ୍ରଙ୍କ ଦେହ ନେଇଯାଇ ଯଥାବିଧି ସଂସ୍କାର କଲେ ।

ପ୍ରଣବ ତା'ପରେ ସାଧୁଙ୍କୁ ଗର୍ଭ ଭିତରେ ଥିବା ଅର୍ଥ କଥା କହିଲେ । "ସାଧୁବାବା ! ଆପଣ ଯେଉଁ ଦାତବ୍ୟ କାର୍ଯ୍ୟ କରୁଛନ୍ତି, ସେ ଅର୍ଥ ସେଥିରେ ବ୍ୟୟ କରନ୍ତୁ !" ସେ ଅନୁରୋଧ ଜଣାଇଲା ।

ସାଧୁ ସେଥିରେ ସମ୍ମତ ହେଲେ । ଟଙ୍କାତକ ବାହାର କରି ତା'ର ସଦୁପଯୋଗ କରାଗଲା ।

ପ୍ରଣବ ଜୟେନ୍ଦ୍ରଙ୍କ ଲୁଗାପଟା ଓ ଟଙ୍କା କଉଡ଼ି ଧରି ପ୍ରତିଷ୍ଠାନକୁ ଫେରିଲା ଓ ତାଙ୍କ ପରିବାରକୁ ସେସବୁ ହସ୍ତାନ୍ତର କଲା । ପରେ ପରେ ତା' ନିଜ ଉପାର୍ଜିତ ବିପୁଳ ଅର୍ଥରୁ ଅଧା ନେଇ ସେ ଶିବଦାସଙ୍କ ପତ୍ନୀଙ୍କୁ ଦେଲା । ନିଜ ପିତାଙ୍କ ନିର୍ଦ୍ଦେଶରେ ସେ ତାହା କରୁଛି ଓ ସେ ବିଷୟରେ କିଛି ପ୍ରଶ୍ନ ଉଠାଇବା ଅନାବଶ୍ୟକ ବୋଲି ସେ ଜଣାଇ ଦେଲା । ତା'ପରେ ସେ ଜୟେନ୍ଦ୍ରଙ୍କ ସ୍ତ୍ରୀଙ୍କ ପାଖକୁ ଖବର ଦେଲା କି ତାଙ୍କର ଆପତ୍ତି ନଥିଲେ ସେ ତାଙ୍କ କନ୍ୟାକୁ ବିବାହ କରିବାକୁ ପ୍ରସ୍ତୁତ । ଜୟେନ୍ଦ୍ରଙ୍କ ସ୍ତ୍ରୀ ଏଥିରେ ଅତି ଆନନ୍ଦିତା ହେଲେ । ଜାକଜମକରେ ବିବାହ ହେଲା । ପ୍ରଣବ ବଣିକ ଘରରେ ବହୁତ ଉନ୍ନତି କଲା ।

ବେତାଳ ଟିକିଏ ଚୁପ୍ ରହି ତା'ପରେ ତୀବ୍ର କଣ୍ଠରେ ରାଜା ବିକ୍ରମାର୍କଙ୍କୁ ପ୍ରଶ୍ନ କଲା, "ରାଜା ! ପ୍ରଣବର ଆଚରଣ ବିଚିତ୍ର ନୁହେଁ କି ? ସେ ଜୟେନ୍ଦ୍ରଙ୍କ ପରିବାରକୁ ସେ ଗର୍ଭ-ନିହିତ ଅର୍ଥରୁ କାହିଁକି ବଞ୍ଚିତ କଲା ? ସେ ଶିବଦାସଙ୍କ ସ୍ତ୍ରୀଙ୍କୁ ବା ନିଜ ଆୟର ଅର୍ଦ୍ଧେକ କାହିଁକି ଦେଲା ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ : ଶିବଦାସ ବାଲି ସୁମାତ୍ରାକୁ ତାଙ୍କ ହୀରା ପଠାଇବା କଥା ଯେ ମିଛ, ଏକଥା ପ୍ରଣବ ବୁଝିପାରିଥିଲା । ମହୀନ୍ଦ୍ର-ପୁରର ରାଜାଙ୍କୁ ଓ ଅନ୍ୟମାନଙ୍କୁହିଁ ଶିବଦାସ ତା' ହୀରା ବିକି କରିଥିଲେ । ଶିବଦାସ କପଟି

ମଲେ, ଆମେ କହିପାରିବା ନାହିଁ । ତୁଏତ ତାଙ୍କୁ ବାଘ ଖାଇବା କଥା ଠିକ୍ । କିନ୍ତୁ ସେ ପାର୍ବତ୍ୟ ଅଞ୍ଚଳର ଏକ ଗର୍ଭ ମଧ୍ୟରେ ଗଚ୍ଛିତ ଥିବା ଟଙ୍କା ତାଙ୍କର ବୋଲି ସନ୍ଦେହ ନାହିଁ । ସୋମେନ୍ଦ୍ର ଓ ଜୟେନ୍ଦ୍ର ଏକାଥରେ ସବୁ ଟଙ୍କା ସାଥିରେ ଧରି ବାହୁଡ଼ିବା ନିରାପଦ ନୁହେଁ ବୋଲି ମନେକରି ଶିବଦାସଙ୍କ ଟଙ୍କାତକ ଗର୍ଭରେ ଲୁଚାଇଥିଲେ । କିମ୍ବା ଶିବଦାସଙ୍କ ଟଙ୍କା ପ୍ରତି ଲୋଭଥିବା ସଙ୍ଗେ ସଙ୍ଗେ ସେମାନଙ୍କର ଭୟ ମଧ୍ୟ ଥିଲା । ତେଣୁ ସଙ୍ଗେ ସଙ୍ଗେ ତାକୁ ନେଇ ନେବାକୁ ସାହସ କରି ନଥିଲେ । ସେ ଦୁହେଁ ପରେ ନିଜ ନିଜ ଭିତରେ ତାହା ଭାଗ କରିବାର ନିଷ୍ପତ୍ତି ନେଇଥିଲେ । ସୋମେନ୍ଦ୍ର କିନ୍ତୁ ଏ ବ୍ୟାପାରରେ ପରେ ଗ୍ଲାନି ବୋଧ କରି ତାଙ୍କ ଭାଗ ଶିବଦାସଙ୍କ ସ୍ତ୍ରୀଙ୍କୁ ଦେଇ ଦେବାକୁ ପୁଅକୁ କହିଥିଲେ ।

"ପ୍ରଶ୍ନର ପରିସ୍ଥିତି ବୁଝିବା ପରେ ଯାହା କଲା ତାହା ଜଣେ ବିବେକୀ ଓ ସତ୍ୟପରାୟଣ ଯୁବକର କର୍ତ୍ତବ୍ୟ । ସେ ଗୁମ୍ଫା ଭିତରେ ଥିବା ଟଙ୍କା ନିଜେ ସ୍ପର୍ଶ ନକରିବାର କାରଣ, ସେ ଟଙ୍କାରେ ପାପ ଅଛି ବୋଲି ତା'ର ଧାରଣା ହୋଇଥିଲା । ସାଧୁଙ୍କ ଜରିଆରେ ଦୁଃସ୍ଥଙ୍କ ସେବାରେ ଖର୍ଚ୍ଚ କରି ସେ ଟଙ୍କାକୁ ସେ ଉପଯୁକ୍ତ ବ୍ୟବହାରରେ ଲଗାଇଲା । ସେ ନିଜ ଉପାର୍ଜନର ଅଧା ଶିବଦାସଙ୍କ ପତ୍ନୀଙ୍କୁ ଦେଇ ନିଜ ବାପାଙ୍କ ଆଗରେ କରିଥିବା ପ୍ରତିଶ୍ରୁତି ରକ୍ଷା କଲା । ସେ ଜୟେନ୍ଦ୍ରଙ୍କ କନ୍ୟାକୁ ବିଭା ହୋଇ ଜୟେନ୍ଦ୍ରଙ୍କ ପାଖରେ କରିଥିବା ପ୍ରତିଶ୍ରୁତି ପାଳନ କଲା । ଏହିପରି ଭାବରେ ସେ ନିଜ ସତ୍ୟ ନିଷ୍ଠାର ପରିଚୟ ଦେଲା । ପ୍ରଶ୍ନର ତରୁଣ ମହତ୍ ବୋଲି ଆମକୁ ସ୍ୱୀକାର କରିବାକୁ ହେବ ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)



ଭାରତର ଇମାରତ

# ଗୋଲକୁଣ୍ଡା ଦୁର୍ଗ




ଆନ୍ଧ୍ର ପ୍ରଦେଶର ରାଜଧାନୀ ହାଇଦ୍ରା-ବାଦଠାରୁ ଦଶ କିଲୋମିଟର ଦୂରରେ ଗୋଟିଏ ପର୍ବତ ଉପରେ ଅବସ୍ଥିତ ଗୋଲକୁଣ୍ଡା ଦୁର୍ଗ । (ହାଇଦ୍ରାବାଦ ୧୯୪୭ ପର୍ଯ୍ୟନ୍ତ ନିଜାମଙ୍କ ରାଜ୍ୟର ରାଜଧାନୀ ଥିଲା ।) ଗୋଲକୁଣ୍ଡା ଦୁର୍ଗ ଏକଦା ଗୋଲକୁଣ୍ଡା ନାମକ ରାଜ୍ୟର ଶାସନ କେନ୍ଦ୍ର ଥିଲା । ଏ ଦୁର୍ଗର ପରିଧି ପ୍ରାୟ ଏଗାର କିଲୋମିଟର ।



୧୫୪୮ ମସିହାରେ ତୁର୍କ ଜାତୀୟ ଯୋଦ୍ଧା ସୁଲ୍‌ତାନ୍ କୁଲି କୁତବ୍ ଏ ସ୍ଥାନକୁ ଦୁର୍ଗ ନିର୍ମାଣ ନିମନ୍ତେ ନିରୂପିତ କରିଥିଲେ । ତାଙ୍କ ଜୀବଦ୍ଦଶାରେ ଆରମ୍ଭ ହୋଇ ଦୁର୍ଗ ନିର୍ମାଣ ବହୁବର୍ଷ ଯାଏ ଚାଲିଥିଲା । ଏ ସୁଲତାନ୍ ବଂଶ 'କୁତବ୍ ସାହି' ନାମରେ ବିଦିତ ।

ଏ ଦୁର୍ଗର ଅନେକ ବିଶେଷତ୍ୱ ଅଛି । ଯଦି ଜଣେ ମୁଖ୍ୟ ଦ୍ୱାର ଦେଶରେ ତାଳି ବଜାଏ, ତେବେ ୬୧ ମିଟର ଉର୍ଦ୍ଧ୍ୱରେ ସ୍ଥିତ ଶିଖର ଦେଶରେ ତା'ର ପ୍ରତିଧ୍ୱନି ଯାଇ ପହଞ୍ଚେ । କାନ୍ଥ ଭିତରେ ଏକ ପ୍ରକାର ବିଶେଷ ପଥର ଖଞ୍ଜା ଥିବାରୁ ଏହା ସମ୍ଭବ ହୁଏ ବୋଲି କୁହାଯାଏ ।





ଦୁର୍ଗକୁ ବେଷ୍ଟନ କରିଛି ଯେଉଁ ମୁଗୁନି ପଥରର ପ୍ରାଚୀର, ତହିଁ ମଧ୍ୟରେ ଆଠ ଗୋଟି ପ୍ରବେଶ ପଥ ଓ ସତୁରିଟି ଗଣ୍ଡ ଜଗୁଆଳି ଗୃହ ରହିଛି । ଏ ଦୁର୍ଗ ଏପରି ଭାବରେ ନିର୍ମିତ ଯେ ସହଜରେ ଶତ୍ରୁ ପକ୍ଷ ଏହା ଭିତରେ ପ୍ରବେଶ କରିବା ସମ୍ଭବ ନଥିଲା ।

ଅନେକ ଦୂର ପର୍ଯ୍ୟନ୍ତ ଏ ଦୁର୍ଗ ଦେଖାଯାଏ। ଦୁର୍ଗର ସର୍ବୋଚ୍ଚ ଅଂଶରେ ଯେଉଁ ପ୍ରାସାଦ ରହିଛି, ତାହାହିଁ ଥିଲା ଦୁର୍ଗର ଅଧିପତିମାନଙ୍କ ନିବାସ। ସେଠାରେ ପହଞ୍ଚିବାକୁ ହେଲେ ଅଙ୍କାବଙ୍କା ପଥରେ ଯିବାକୁ ହୁଏ।






ଦୁର୍ଗ ପାଖରେ କୁତବ୍‌ସାହି ସୁଲ୍‌ତାନ୍‌ମାନଙ୍କ ସମାଧିମାନ ଦେଖାଯାଏ। ଏ ସମାଧି ଗୁଡିକର ଗଠନ ଶୈଳୀ ହେଲା, ଏଗୁଡିକର ଭିତ୍ତି ଓ ପ୍ରଥମ ପର୍ଯ୍ୟାୟର କୋଠା ଚତୁଷ୍କୋଣ; ତହିଁ ଉପରେ ଗୋଲାକାର ଗମ୍ବୁଜ। ଚତୁର୍ଦ୍ଦିଗରେ ରହିଛି ସରୁ ସରୁ ଗମ୍ବୁଜ। ମୁସ୍‌ଲିମ୍ ସ୍ଥାପତ୍ୟ ଉପରେ ପଦ୍ମ ବା ପଦ୍ମ ପତ୍ର ଭଳି ହିନ୍ଦୁ କଳାର ପ୍ରଭାବ ପଡ଼ିଛି।

୧୬୮୭ ପର୍ଯ୍ୟନ୍ତ ଗୋଲକୁଣ୍ଡା ରାଜ୍ୟ ସ୍ୱାଧୀନ ହୋଇ ରହିଥିଲା। ସେ ବର୍ଷ ଆଉରଂଜେବ୍ ବିରାଟ ସୈନ୍ୟଦଳ ଧରି ସାମ୍ରାଜ୍ୟ ବିସ୍ତାର ନିମନ୍ତେ ଦକ୍ଷିଣ ଭାରତ ଅଭିମୁଖେ ଅଭିଯାନ ଆରମ୍ଭ କରିଥିଲେ।





ଆଉରଂଜେବ୍ ଗୋଲକୁଣ୍ଡା ଦୁର୍ଗ ଆକ୍ରମଣ କଲେ । ଉକ୍ରାନ୍ତ ଯୁଦ୍ଧ ହେଲା । କିନ୍ତୁ କୁତବ୍‌ସାହୀ ସୁଲ୍‌ତାନ୍‌ଙ୍କ ସୈନ୍ୟଦଳ ମୋଗଲ ଆକ୍ରମଣକାରୀଙ୍କ ସୈନ୍ୟଦଳ ସହ ମୁକାବିଲାରେ ହାରିଗଲେ । ଆଉରଂଜେବ୍ ଗୋଲ-କୁଣ୍ଡା ଦୁର୍ଗ ଅଧିକାର କଲେ ।

ଗୋଲକୁଣ୍ଡାର ଭାଗ୍ୟରବି ଅସ୍ତମିତ ହେଲା । କାରଣ ଏହା ପରେ ପରେ ଖାସ ମୋଗଲ ସାମ୍ରାଜ୍ୟହିଁ ଖଣ୍ଡ ଖଣ୍ଡ ହେବାକୁ ଆରମ୍ଭ କଲା । ଗୋଲକୁଣ୍ଡା ଦୁର୍ଗର ଉପଯୁକ୍ତ ରକ୍ଷଣାବେକ୍ଷଣ କରିବ କିଏ ? ଯାହାହେଉ, ଏକ ଭିନ୍ନ କାରଣରୁ ଏ ଦୁର୍ଗର ନାମ ପ୍ରଚରିତ ହେଉଥିଲା—ଦୁର୍ଗ ଭିତରେ ଥିବା ହୀରାଖଣି ଯୋଗୁଁ ।






ଗୋଲକୁଣ୍ଡାରେ ଯେଉଁ ସବୁ ହୀରାଖଣି ଥିଲେ, ସେହିମାନଙ୍କ ଭିତରୁ ପୃଥିବୀର ସବୁଠାରୁ ବିଖ୍ୟାତ ହୀରାମାନ ବାହାରିଛନ୍ତି । ସେ ସବୁର ଅନ୍ତର୍ଭୁକ୍ତ ହେଲେ ୧୬୫୦ ରେ ମିଳିଥିବା "ଦି ଗ୍ରେଟ୍ ମୋଗଲ୍", "ଓରଲୋଫ" ଏବଂ ବିଶ୍ୱବିଖ୍ୟାତ "କୋହିନୂର" ହୀରା—ଯାହାକି ଇଂଲଣ୍ଡ-ରାଣୀଙ୍କ ମୁକୁଟରେ ଶୋଭା ବଢ଼ାଉଛି ।



# ବୋହୂଟିଏ ଲୋଡ଼ା!

ବିଦର୍ଭର ରାଜା ବିଜୟସେନ ଜଣେ ଅତ୍ୟନ୍ତ ଉତ୍ତମ ଶାସକ ଥିଲେ । ଏକ ଦିଗରେ ସାଧାରଣ ପ୍ରଜାମାନେ ଯେପରି ତାଙ୍କ ଶାସନରେ ସୁଖରେ କାଳାତିପାତ କରୁଥିଲେ, ଅନ୍ୟ ଦିଗରେ ରାଜ୍ୟର କବି, କଳାକାର ଓ ପଣ୍ଡିତମାନେ ସେହିପରି ରାଜ-ପୃଷ୍ଠପୋଷକତା ପାଇ ନିଜ ନିଜ ପ୍ରତିଭାର ବିକାଶ କରୁଥିଲେ । ପ୍ରଜାମାନେ ତାଙ୍କୁ ବହୁତ ଶ୍ରଦ୍ଧା କରୁଥିଲେ ।

ରାଜା ବିଜୟସେନ ପ୍ରଜାଙ୍କ ସୁଖକୁ ନିଜ ସୁଖ ବୋଲି ମଣୁଥିଲେ । କିନ୍ତୁ ସେ ଯେତେ ସୁଖୀ ହେବା କଥା, ତାହା ହୋଇପାରୁ ନଥିଲେ । କାରଣ ହେଲା, ତାଙ୍କ ଏକମାତ୍ର ପୁତ୍ର ପ୍ରତାପସେନ ଖୁବ୍ ଜ୍ଞାନୀ, ଗୁଣୀ ତଥା ସତ୍ୟପରାୟଣ ହେଲେ ବି ବଡ଼ ଅନ୍ୟମନସ୍କ ପ୍ରକୃତିର ଯୁବକ ଥିଲେ । ସେ ଅଧିକାଂଶ ବେଳେ ଦାର୍ଶନିକ ଚିନ୍ତାରେ ବୁଡ଼ି ରହୁଥିଲେ କି କ'ଣ, ସାଂସାରିକ ସମସ୍ୟା ବିଷୟରେ ସେ ଉଦାସୀନ ରହୁଥିଲେ ।

ଦିନେ ରାଜା ତାଙ୍କ ମନ୍ତ୍ରୀମାନଙ୍କୁ କହିଲେ, "ପୁଅଟା ବଡ଼ ନିର୍ବୁଦ୍ଧିଆ ମନେ ହେଉଛି ।"

ପ୍ରଧାନମନ୍ତ୍ରୀ ମୃଦୁ ପ୍ରତିବାଦ କରି କହିଲେ, "ମହିମା! ଆପଣ କହୁଛନ୍ତି କ'ଣ? ଯୁବରାଜ ତାଙ୍କ ଜ୍ଞାନଗରିମା ଯୋଗୁଁ ପଣ୍ଡିତମାନଙ୍କ ପାଖରେ ଆଦୃତ । ତାଙ୍କ ଦୟାଭାବ ଓ ମଧୁର ବ୍ୟବହାର ଯୋଗୁଁ ସେ ସାଧାରଣ ପ୍ରଜାଙ୍କ ପ୍ରିୟ । ତାଙ୍କୁ ଆପଣ ନିର୍ବୁଦ୍ଧିଆ କହିଲେ ଚଳିବ?"

ରାଜା ହସିଲେ ଓ କହିଲେ, "ରାଜ୍ୟ ଶାସନ ପାଇଁ ତ ଖାଲି ଜ୍ଞାନୀ ହେଲେ ଚଳିବ ନାହିଁ, ଚତୁର ହେବା ଦରକାର!"

"ମହାରାଜ! ରାଜକୁମାରଙ୍କ ସହିତ ବୁଦ୍ଧିମତୀ କନ୍ୟାଟିଏ ଦେଖି ବିଭା କରାଇ



ହେଲେ ବେଶ୍ ଭଲ ହେବ ।" ଜଣେ ବୟସ୍କ ମନ୍ତ୍ରୀ କହିଲେ ।

କଥାଟି ରାଜାଙ୍କ ମନକୁ ପାଇଲା । ବାସ୍ତବିକ, ରାଜକନ୍ୟାରେ କ'ଣ ଦରକାର ? ବୋହୂ ଚତୁର ହୋଇଥିଲେ ଯୁବ-ରାଜାଙ୍କର ବହୁତ ସହାୟତା କରି ପାରିବ ।

ରାଜା ଛଦ୍ମବେଶ ପକାଇ ରାଜ୍ୟ ବୁଲି ବାହାରିଲେ । ବୁଦ୍ଧିମତୀ କନ୍ୟାଟିଏ ଠାବ କରିବା ଥିଲା ଉଦ୍ଦେଶ୍ୟ । ସନ୍ଧ୍ୟାବେଳକୁ ସେ ପହଞ୍ଚିଲେ ଗୋଟିଏ ବଡ଼ ଗାଁରେ । ସେ ଗାଁର ମୁଖ୍ୟଙ୍କୁ ଗୋପନରେ ନିଜ ପରିଚୟ ଦେଇ ତାଙ୍କ ଘରେ ରାତ୍ରି ଯାପନ କରି ପ୍ରଭାତରେ ପୁଣି ଯାତ୍ରାରମ୍ଭ କରିବା ଥିଲା ତାଙ୍କ ଉଦ୍ଦେଶ୍ୟ ।

ସେ ମୁଖ୍ୟଙ୍କ ଘରେ ପହଞ୍ଚି ତାଙ୍କ କନ୍ୟାକୁ ଭେଟିଲେ । ଯେତେବେଳେ ସେ ଶୁଣିଲେ କି ମୁଖ୍ୟ ବିଦର୍ଭର ରାଜଧାନୀ ଅମରାବତୀକୁ ରାଜାଙ୍କୁ ଭେଟିବା ପାଇଁ ଯାଇଛନ୍ତି, ସେତେବେଳେ ତାଙ୍କ ମୁହଁରୁ ବାହାରି ପଡ଼ିଲା, "ଆରେ ! ସେ ବୃଥାରେ ଗଲେ !"

ମୁଖ୍ୟଙ୍କ କନ୍ୟା ସୁମତି ପଚାରିଲା, "ମହାଶୟ ! ଆପଣ କିଏ ? ତାଙ୍କଠିଁ କି ପ୍ରୟୋଜନ ଥିଲା ?"

ରାଜା ଟିକିଏ ଥତମତ ହୋଇ କହିଲେ, "ଝିଅ, ମୁଁ ଜଣେ ବଣିକ । ବେପାର ପାଇଁ ସୁଗମପୁର ଯାଉଛି । ତମ ବାପାଙ୍କଠାରେ କାମ ଥିଲା ଓ ଏଠାରେ ରାତ୍ରି ଯାପନ କରିବି ଭାବିଥିଲି !"

"ଆପଣ ଆମ ଘରେ ଆତିଥ୍ୟ ଗ୍ରହଣ କରନ୍ତୁ । ବାପା ନ ଥିଲେ କ'ଣ ହେଲା ?" ସୁମତି କହିଲା ।

ରାତିରେ ଖାଇବାକୁ ବସିଲା ବେଳେ ରାଜା ନିଜ ଡାହାଣ ହାତର ହୀରା ଅଙ୍ଗୁରୀୟଟି ଖୋଲି ବାମ ହାତରେ ପିନ୍ଧିଲେ । ଝିଅଟି ତାହା ଲକ୍ଷ୍ୟ କରୁଛି ଦେଖି ସେ କହିଲେ, "ଝିଅ, ଡାହାଣ ହାତର ଅଙ୍ଗୁରୀୟ ବାମହାତକୁ ଗଲେ କ୍ଷତି କ'ଣ ?"

ସୁମତି କହିଲା, "କ୍ଷତି ନ ଥାଇ ପାରେ, ଅସୁବିଧା ଅଛି ନିଶ୍ଚୟ । ଯିଏ କୋମଳ ଆସନରେ ବସିବାକୁ ଅଭ୍ୟସ୍ତ, ତାକୁ କାଠ

ପିଢ଼ାହେଲେ ତା'ର କ୍ଷତି ହେବ ନାହିଁ, କିନ୍ତୁ ଅସୁବିଧା ହେବ ।"

ରାଜା ବୁଝିପାରିଲେ ଯେ ସେ ନିଜେ କାଠ ପିଢ଼ାରେ ବସିବାବେଳେ ଅସୁବିଧା ଅନୁଭବ କରିଥିଲେ ଓ ଝିଅଟି ତାହା ଲକ୍ଷ୍ୟ କରିଛି ! ଝିଅଟିର ପର୍ଯ୍ୟବେକ୍ଷଣ ଶକ୍ତି ଦେଖି ସେ ଖୁସି ହେଲେ ।

ରାଜା ତାଙ୍କ ପାଇଁ ପ୍ରସ୍ତୁତ ଶଯ୍ୟାରେ ଶୋଇବାକୁ ଯାଉଛନ୍ତି, ସୁମତି କହିଲା, "ଆଜ୍ଞା, ଟିକିଏ ଅପେକ୍ଷା କରନ୍ତୁ ।" ଏହା କହି ସେ ବିଛଣା ଉପରେ ଆହୁରି ଦୁଇଖଣ୍ଡି ରେଜେଇ ପକାଇ ତାକୁ ସୁକୋମଳ କଲା । ରାଜା ବୁଝିଲେ ଯେ ସେ କୋମଳ ଶେଯକୁ ଅଭ୍ୟସ୍ତ ବୋଲି ଝିଅ ବୁଝି ନେଇଛି । ସେ ପଚାରିଲେ, "ତମେ ତ ଶେଯ ପ୍ରସ୍ତୁତ କରି ସାରିଥିଲ । ପୁଣି କାହିଁକି ସେଥିରେ ପରିବର୍ତ୍ତନ କଲ ?"

"ଆଜ୍ଞା, ଯିଏ କାଠ ପିଢ଼ାରେ ବସିବାକୁ ଅଭ୍ୟସ୍ତ ନୁହେଁ, ଅଧିକ ଉଚ୍ଚ ଶେଯ ନ ହେଲେ ସେ ଶୋଇ ପାରିବ ନାହିଁ ।" ସୁମତି କହିଲା ।

ରାଜା ମନେ ମନେ ଝିଅଟିକୁ ବହୁତ ତାରିଫ୍ କଲେ ।

ଭୋର ହେଲା । ରାଜା ବିଦାୟ ନେବାକୁ ପ୍ରସ୍ତୁତ ହୋଇ ପଚାରିଲେ, "ଝିଅ ! ଅନ୍ଧାର ଥାଉଁ ଥାଉଁ ଉଠି ତମେ ମୋ ପାଇଁ ଜଳଖିଆ ପ୍ରସ୍ତୁତ କରିଛ ଦେଖୁଛି !"

"ଆଜ୍ଞା ! ଅନ୍ଧାର କଟି ଗଲଣି । ବର୍ତ୍ତମାନ ଯେଉଁ ଅନ୍ଧାରତକ ରହିଛି, ଆଶାକରେଁ ସେ



ଅନ୍ଧାର ଦୂର କରିବା ନିମନ୍ତେ ଆପଣ ଅନୁମତି ଦେବେ !" ସୁମତି କହିଲା ।

ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତମେ କ'ଣ କହୁଛ ବୁଝିପାରିଲି ନାହିଁ ତ ?"

ସୁମତି କଣ୍ଠସ୍ୱର ନମ୍ର କରି କହିଲା, "ମହାରାଜ ! ଆପଣ ସ୍ୱୟଂ ଆସି ରାତ୍ରି ଯାପନ କରିଗଲେ ବୋଲି ବାପାଙ୍କୁ କହିବି ନିଶ୍ଚୟ !"

ରାଜା ଆହୁରି ଆଶ୍ଚର୍ଯ୍ୟ ହେଲେ ଓ ପଚାରିଲେ, "ମୁଁ ରାଜା ବୋଲି ଜାଣିଲ କିପରି ?"

ସୁମତି ନମ୍ର ଭାବରେ କହିଲା, "ମହାରାଜ ! ଆପଣ ଗତକାଲି ମୋ ବାପା ରାଜାଙ୍କୁ ଭେଟିବାକୁ ଯାଇଛନ୍ତି ବୋଲି ଶୁଣିବା ମାତ୍ରେ କହିପକାଇଲେ ଯେ ତାଙ୍କ ଯିବା ବ୍ୟର୍ଥ ହେଲା ! ମୋର ସନ୍ଦେହ ହେଲା ଯେ ହୁଏତ ଆପଣ ରାଜାଙ୍କ ପାଖ ଲୋକ ଯିଏ କି ରାଜା ନଥିବା କଥା ଜାଣନ୍ତି, ନଚେତ୍ ନିଜେ ରାଜା ! ଯେତେବେଳେ ଆପଣ ଅଙ୍ଗୁରୀୟ ବଦଳାଇଲେ, ମୁଁ ଲକ୍ଷ୍ୟ କରି ଦେଖିଲି ତାହା ଏକ ବଡ଼ ହୀରା-ଖଚିତ ଅଙ୍ଗୁରୀୟ । ଆମ ରାଜା ହୀରକ ଅଙ୍ଗୁରୀୟ ବ୍ୟବହାର କରିବାର ଶୁଣିଥିଲି । ତହିଁ ପୂର୍ବରୁ ଆପଣ ଯେ ବଣିକ ନୁହନ୍ତି, ତାହା ବୁଝିଯାଇଥିଲି । କୌଣସି ବଣିକ ଏତେ ଦୂରକୁ ବେପାର ପାଇଁ ଯିବ ଅଥଚ ସାଙ୍ଗରେ କେହି ସହକାରୀ ନଥିବେ କିମ୍ବା କୌଣସି ପଣ୍ୟ ଦ୍ରବ୍ୟ ନଥିବ, ଏହା ହୋଇ ନପାରେ !"

ରାଜା ସୁମତିକୁ ଆଶୀର୍ବାଦ କରି ବାହୁଡ଼ିଗଲେ । ବାଟରେ ଦେଖାହେଲା ସୁମତିର ବାପାଙ୍କ ସହ । ସେ ପ୍ରଥମେ ରାଜାଙ୍କୁ ଛଦ୍ମବେଶରେ ଚିହ୍ନିପାରିଲେ ନାହିଁ । ରାଜା ନିଜ ପରିଚୟ ଦେବାରେ ସେ ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି ଆନନ୍ଦିତ ହେଲେ । କିନ୍ତୁ ଯେତେବେଳେ ରାଜା କହିଲେ କି ସୁମତିକୁ ସେ ନିଜ ଉଆସକୁ ବୋହୂ କରି ନେବାକୁ ଚାହାନ୍ତି, ସେତେବେଳେ ତାଙ୍କ ଆନନ୍ଦ ଧରି ରଖିବ କିଏ !





# ଉତ୍ତର ରାମାୟଣ

କାର୍ତ୍ତବୀର୍ଯ୍ୟାର୍ଜ୍ଜୁନଙ୍କ ହାତରେ ବନ୍ଦୀ ହୋଇ ପୁଣି ମୁକ୍ତ ହୋଇ ଆସିବା ପରେ ମଧ୍ୟ ରାବଣ ପୂର୍ବପରି ଅହଂକାରୀ ଥିଲା । ଅହଂକାର ଯୋଗୁ ସେ ନାନା ଭ୍ରମଭ୍ରାନ୍ତିର ବଶବର୍ତ୍ତୀ ଥିଲା । ତା'ର ଅନେକ ଗୁଣ ମଧ୍ୟ ଅହଂକାର ଯୋଗୁ ପ୍ରକାଶ ପାଇ ପାରୁ ନଥିଲା । ଅହଂକାର ମଦମତ୍ତ ହୋଇ ସେ ସାରା ବ୍ରହ୍ମାଣ୍ଡ ଭ୍ରମଣ କରୁଥିଲା ଓ ଯେଉଁଠାରେ ଇଚ୍ଛା ସେଠାରେ ଯୁଦ୍ଧ କରୁଥିଲା । ଥରେ ଯୁଦ୍ଧରେ ବିଜୟୀ ହେଲେ ଅହଂକାର ବଢ଼ିଯାଏ, ରାବଣ ତ ତିନିପୁରରେ ସମସ୍ତଙ୍କ ସହ ଯୁଦ୍ଧ କରି ବିଜୟୀ ହୋଇଥାଏ । କାର୍ତ୍ତବୀର୍ଯ୍ୟାର୍ଜ୍ଜୁନଙ୍କ ପରାକ୍ରମ ସେ ଭୁଲିଗଲା ପୁଣି ଯୁଦ୍ଧ କରି ରାଜ୍ୟଭୋଗ ଲାଳସାରେ ବିଶ୍ୱବ୍ରହ୍ମାଣ୍ଡ ଘୂରି ବୁଲିଲା । ସେତିକିବେଳେ କିଏ ଜଣେ ତାକୁ ବାନରରାଜ ବାଳୀର ବଳ ପରାକ୍ରମ ବିଷୟରେ କହିଲା । ସେ କଥା ଶୁଣି ସିଏ କି ଚୁପ୍ ହୋଇ ରହିପାରେ ? ଏପର୍ଯ୍ୟନ୍ତ ସେ ବାନରରାଜା ସହିତ ଯୁଦ୍ଧ କରିନାହିଁ । ତେଣୁ ସେ ତା'ର ମନ୍ତ୍ରୀ ଓ ଅନୁଚର ସବୁ ଧରି ଯାଇ ପହଞ୍ଚିଲା କିଷ୍କିନ୍ଧ୍ୟା ନଗରୀରେ ।

ରାବଣର ଯୁଦ୍ଧ ଡାକରା ଶୁଣି ବାଳୀର ମନ୍ତ୍ରୀ ତାର ଆସି ରାବଣକୁ କହିଲା, "ମହାଶୟ, ଏବେ ଆମର ରାଜା କିଷ୍କିନ୍ଧ୍ୟାରେ ନାହାନ୍ତି । ଅନ୍ୟ ବାନରମାନେ ଯୁଦ୍ଧ କରିବାକୁ ଅସମର୍ଥ । ରାଜା ବାଳୀ ଦୂର ସମୁଦ୍ରରେ ସନ୍ଧ୍ୟାବନ୍ଦନ କରିବାକୁ ଯାଇଛନ୍ତି ।

ସେ ଆସିବା ପର୍ଯ୍ୟନ୍ତ ଯଦି ଅପେକ୍ଷା କରିବେ ତେବେ ଭଲ । ଏଇ ଆଗରେ ଯେଉଁ ହାଡ଼ର ପର୍ବତ ଦେଖୁଛନ୍ତି ସେସବୁ ବାଲୀଙ୍କ ଶତ୍ରୁଙ୍କର । ଆପଣଙ୍କ ହାଡ଼ ମଧ୍ୟ ଏଇ ହାଡ଼ର ପର୍ବତ ସହିତ ମିଶିବ । ନଚେତ୍ ଯଦି ନିହାତି ଅପେକ୍ଷା ନ କରି ପାରିବେ ତେବେ ଧରତର ଦକ୍ଷିଣ ତଟରେ ସେ ସନ୍ଧ୍ୟାବନ୍ଦନ କରୁଛନ୍ତି ସେଠାକୁ ଯାଇ ପାରନ୍ତି ।"

ମନ୍ତ୍ରୀ ତାରର ଅପମାନସୂଚକ କଥା ଶୁଣି ରାବଣ ରାଗିଗଲା । ତାକୁ କେହି ଉପଦେଶ ଦେଉ ସେକଥା ସେ କପରି ବା ସହ୍ୟ କରନ୍ତା । ତତ୍‌କ୍ଷଣାତ୍ ସେଇଠାରୁହିଁ ପୁଷ୍ପକ ବିମାନ ଚଢ଼ି ଦକ୍ଷିଣ ସମୁଦ୍ରତଟକୁ ଗଲା । ସେଠାରେ ପହଞ୍ଚି ଦେଖିଲା ପର୍ବତ ସଦୃଶ ଦୀର୍ଘକାୟ ବାଲୀ ସମୁଦ୍ର ତଟରେ ବସି ସନ୍ଧ୍ୟାବନ୍ଦନ କରୁଛି । ରାବଣ କିଛି ଦୂରରେ ତା'ର ପୁଷ୍ପକ ବିମାନ ସହିତ ମନ୍ତ୍ରୀ ଓ ସେନାପତିଙ୍କୁ ରଖି ନିଜେ ଚୁପ୍‌ଚାପ୍ ବାଲୀର ପଛପଟରୁ ଧରିବା ପାଇଁ ଚାଲିଲା । ସେ ନିକଟରେ ହେବା ପରେ ହଠାତ୍ ବାଲୀ ତାକୁ ଧରି କାଖରେ ଜାକି ଆକାଶ ମାର୍ଗରେ ଉଡି ଚାଲିଗଲା । ରାବଣର ମନ୍ତ୍ରୀ ଓ ସେନାପତିମାନେ କିଛି ଦୂର ପର୍ଯ୍ୟନ୍ତ ପାଛି କରି ଦୌଡିଲେ । କିନ୍ତୁ ସେମାନେ ଯେ ପ୍ରାଣ ପାଇ ଫେରି ଆସିଲେ ସେଥିପାଇଁ ନିଜକୁ ଭାଗ୍ୟବାନ୍ ମନେକଲେ ।

ରାବଣକୁ କାଖରେ ଜାକି ବାଲୀ ପଶ୍ଚିମ ତଟ, ପରେ ଉତ୍ତର ଓ ଶେଷରେ ପୂର୍ବ





ତଟରେ ସ୍ନାନ କରି ସନ୍ଧ୍ୟାକୁ ଫେରିଲା । ସେଠାରେ ସେ ରାବଣକୁ ମୁକ୍ତ ଦେଲା ଓ ପଚାରିଲା, "ତୁ ହଠାତ୍ କେଉଁଠୁ ଆସିଲୁ । ତୁ କ'ଣ ଚାହୁଁ ?"

ରାବଣ ହାତ ଯୋଡି ବାଳୀକୁ କ୍ଷମା ମାଗିଲା ଓ କହିଲା, "ଆପଣଙ୍କ ପରି ବଳବାନ୍ ସାରା ସୃଷ୍ଟିରେ ଦ୍ୱିତୀୟ ମୁଁ କେଉଁଠି ଦେଖି ନାହିଁ । ଏବେ ମୋତେ ଦୟା କରନ୍ତୁ । ଅଗ୍ନିକୁ ସାକ୍ଷୀ ରଖି ମୋତେ ଆପଣଙ୍କ ମିତ୍ର ଭାବରେ ଦେଖନ୍ତୁ ।" ସେଇଆ ହେଲା । ସେଠାରେ କିଛିଦିନ ରହିବା ପରେ ରାବଣ ନିଜ ଦେଶକୁ ଫେରିଗଲା ।

ଅଗସ୍ତ୍ୟ ମୁନି ଶ୍ରୀରାମଚନ୍ଦ୍ରଙ୍କୁ ଏ ଗଳ୍ପ ଶୁଣାଇ କରି କହିଲେ, "ରାମ, ତୁମର ଗୋଟିଏ ମାତ୍ର ବାଣରେ ମରିଥିବା ବାଳୀ ଥିଲା ଅତ୍ୟନ୍ତ ପରାକ୍ରମୀ ଓ ଅପାର ଶକ୍ତିଶାଳୀ ।"

ଶ୍ରୀରାମଚନ୍ଦ୍ର କହିଲେ, "ମହର୍ଷି, ରାବଣ ଶକ୍ତିଶାଳୀ ଥିଲା, ବାଳୀ ଥିଲା ତା'ଠାରୁ ଅଧିକ ଶକ୍ତିଶାଳୀ କିନ୍ତୁ ମୋର ମନେହୁଏ ହନୁମାନ ସର୍ବାପେକ୍ଷା ଅଧିକା ଶକ୍ତିଶାଳୀ ଓ ମହାନ୍ । ସେ ଏକା ଏକା ବିନା ସହାୟତାରେ ସମୁଦ୍ର ଲଂଘନ କରି, ଲଙ୍କାରେ ପ୍ରବେଶ କରି, ଅସଂଖ୍ୟ ଅସୁର ନାଶ କଲା ଓ ସାରା ଲଙ୍କାରେ ଅଗ୍ନିସଂଯୋଗ କରି ଦହନ କଲା । ତା' ପରି ସାହସିକ କାର୍ଯ୍ୟ ଅନ୍ୟ କେହି କରି ପାରନ୍ତା ନାହିଁ । କିନ୍ତୁ ଏତେ ବଳ ଥିବା ସତ୍ତ୍ୱେ ସେ କିପରି ବାଳୀ ସହିତ ଯୁଦ୍ଧ କରୁ ନଥିଲା । ଚାହିଁଥିଲେ ସେ ତ ବାଳୀ ସହିତ ଯୁଦ୍ଧ କରି ତାକୁ ପରାସ୍ତ କରି ସୁଗ୍ରୀବକୁ ରାଜ୍ୟ ଦେଇ ପାରିଥା'ନ୍ତା । ମହର୍ଷି ମୋର ଏ ସନ୍ଦେହ ମୋଚନ କରନ୍ତୁ ।"

ଅଗସ୍ତ୍ୟ ମୁନି କହିଲେ, "ହେ ରାମ, ତମେ ହନୁମାନ ବିଷୟରେ ଯାହା କହିଲ ତାହା ସତ୍ୟ । ହନୁମାନ ପରି ବଳବାନ୍, ବେଗବାନ୍, ବୁଦ୍ଧିମାନ୍, ବିବେକବାନ୍ ଓ ଜ୍ଞାନୀ ଆଉ ବ୍ରହ୍ମାଣ୍ଡରେ ଦ୍ୱିତୀୟ କେହି ନାହିଁ । ସେ ଜନ୍ମଠାରୁହିଁ ଅନେକ ଅଦ୍ଭୁତ କାର୍ଯ୍ୟ କରିଛି । କିନ୍ତୁ କୌଣସି ଅଭିଶାପ



ଫଳରେ ସେ ନିଜର ଶକ୍ତି ବିଷୟରେ ସବୁ ଭୁଲି ଯାଇଥିଲା । ସେ କଥା ତୁମକୁ କହୁଛି ଶୁଣ ।"

"ତପସ୍ୱିନୀ ଅଞ୍ଜନା ହେଉଛନ୍ତି ଋଷି ଗୌତମଙ୍କର କନ୍ୟା । ସେ କୁମାରୀ ଥିଲେ ଓ ସର୍ବଦା ତପସ୍ୟାରତା ଥିଲେ । ବାୟୁଦେବଙ୍କ ଦୟାରୁ ତାଙ୍କ ଅଞ୍ଜଳିରେ ଯାହା ଫଳ ଆସି ପଡ଼େ, ତାହା ଖାଇ ସେ ଜୀବନ ଧାରଣ କରୁଥା'ନ୍ତି । ଥରେ ଶିବଙ୍କର ଏକ ଶକ୍ତି ବାୟୁଦେବତା ଆଣି ଅଞ୍ଜନାଙ୍କ ହାତରେ ଦେଲେ । ତପସ୍ୱିନୀ ଅଞ୍ଜନା ତାକୁ ଫଳ ଭାବି ଖାଇଲେ । ତା'ପରେ ତାଙ୍କ ମଧ୍ୟରେ ସୃଷ୍ଟି ହେଲା ହନୁମାନ । ଅଞ୍ଜନା ନିଜ ଶରୀରରେ ଏପରି ପରିବର୍ତ୍ତନ ଦେଖି ବହୁତ ଆଶ୍ଚର୍ଯ୍ୟ ହେଲେ । ସେ ବ୍ୟସ୍ତ ହୋଇ ବାୟୁଦେବତାଙ୍କୁ ଡାକି ପଚାରିଲେ, "ହେ ପବନଦେବତା, ମୁଁ ଆପଣଙ୍କ ଉପରେ ସମ୍ପୂର୍ଣ୍ଣ ଭାବରେ ନିର୍ଭର କରି ତପସ୍ୟାରତା ଥିଲି । କିନ୍ତୁ ଏ କ'ଣ ? ମୁଁ ଜଣେ ତପସ୍ୱିନୀ ଓ କୁମାରୀ । ମୋ ଭିତରେ ଏ ପ୍ରକାର ଆଶ୍ଚର୍ଯ୍ୟଜନକ ପରିବର୍ତ୍ତନ କିପରି ହେଲା । ଏହାର ପରିଣାମ ବା କ'ଣ ହେବ ? ପବନ ଦେବତା କହିଲେ, "ଦେବୀ ଅଞ୍ଜନା, ଧୈର୍ଯ୍ୟ ଧରନ୍ତୁ । ମୁଁ ଏହାର କାରଣ କହୁଛି ଶୁଣନ୍ତୁ । ଦେବ ଦେବ ମହାଦେବଙ୍କ ମଧ୍ୟରୁ ଏକ ସୃଜନୀ ଶକ୍ତିର ସୃଷ୍ଟି ହେଲା, ତାହା ଏତେ ଶକ୍ତିଶାଳୀ ଯେ ତାକୁ ଧାରଣ କରିବା ପରି ଉଚିତ ତପଃଶକ୍ତି ସମ୍ପନ୍ନ ବ୍ୟକ୍ତି କେହି ନ ଥିଲେ । ମୋ ଚେତନା ମଧ୍ୟରେ କେବଳ ଥିଲେ ଆପଣ । 'ଆପଣଙ୍କ ବିଶୁଦ୍ଧ ଜୀବନ ଓ ତପଃଶକ୍ତି କେବଳ ଶିବଙ୍କର ସେହି ଶକ୍ତିକୁ ଧାରଣ କରିବାକୁ ସକ୍ଷମ ବୋଲି ମୁଁ ଏପରି କରିଛି । ମୋର ଦୋଷ କ୍ଷମା କରନ୍ତୁ । କିନ୍ତୁ ମୁଁ ଯଦି ଏପରି ନ କରିଥା'ନ୍ତି ସେହି ଶକ୍ତି ବ୍ରହ୍ମାଣ୍ଡକୁ ହୁଏତ ଧ୍ୱଂସ କରି ଦେଇଥା'ନ୍ତା । ଏବେ ଆପଣ ଦେଖିବେ ଆପଣ କୁମାରୀ ହୋଇ ମଧ୍ୟ ଜଗତ୍ ବିଖ୍ୟାତ ପୁତ୍ରର ଜନନୀ ହୋଇ ପାରିବେ । ଏବେ ମୁଁ ସେ ଶିଶୁର ପିତା ଭାବରେ ନିଜକୁ ପରିଚୟ ଦେବି ।" ଜନ୍ମ ହେବା ପରେ

ପରେହିଁ ସେ ପାଚିଲା ଫଳ ଭାବି ଉଦୟମାନ ସୂର୍ଯ୍ୟଙ୍କୁ ଧରିବା ପାଇଁ ସହସ୍ର ଯୋଜନ ଉଡ଼ିଯାଇଥିଲା । ସେହି ଅଦ୍ଭୁତ ଶିଶୁର ଅପାର ଶକ୍ତି ଦେଖି ଦେବ, ମନୁଷ୍ୟ ଗନ୍ଧର୍ବ ସବୁ ଆଶ୍ଚର୍ଯ୍ୟ ହେଲେ । ଠିକ୍ ସେହି ସମୟରେ ରାହୁ ମଧ୍ୟ ସୂର୍ଯ୍ୟଙ୍କୁ ଗ୍ରାସ କରିବାକୁ ଯାଉଥିଲା । ରାହୁକୁ ଦେଖି ହନୁମାନ ସୂର୍ଯ୍ୟଙ୍କୁ ଛାଡ଼ି ରାହୁକୁ ଗୋଡ଼ାଇଲା; ରାହୁ ପ୍ରାଣ ବିକଳରେ ଇନ୍ଦ୍ରଙ୍କ ପାଖରେ ପହଞ୍ଚି ଶରଣ ନେଲା । ଇନ୍ଦ୍ର ରାହୁକୁ ଧରି ଐରାବତ ଚଢ଼ି ସେହି ଅଦ୍ଭୁତ ଶିଶୁକୁ ଦେଖିବାକୁ ଆସନ୍ତେ ହନୁମାନ ଶ୍ୱେତହସ୍ତୀ ଐରାବତକୁ ଦେଖି ଆଉ ଏକ ଧଳା ଫଳ ଭାବି ଧରିବାକୁ ଗୋଡ଼ାଇଲା । ଏଥିରେ ଇନ୍ଦ୍ର କୁପିତ ହୋଇ ବଜ୍ରରେ ତାକୁ ପ୍ରହାର କଲେ । ଶିଶୁ ହନୁମାନ ମୂର୍ଚ୍ଛା ହୋଇ ପଡ଼ିଲା । ବାୟୁଦେବ ଏଥିରେ ବିଶେଷ ଚିନ୍ତିତ ହୋଇ ଅଚେତନ ପୁଅକୁ ଧରି ଗୋଟିଏ ପର୍ବତ ଗୁମ୍ଫା ଭିତରେ ରହିଲେ ବାୟୁ ସଞ୍ଚାଳନ ବନ୍ଦ ହେବାରୁ ସାରା ସଂସାରର ପ୍ରାଣୀମାନେ ମରିବାକୁ ବସିଲେ । ଏପରି ଏକ ସଙ୍କଟମୟ ପରିସ୍ଥିତି ସୃଷ୍ଟି ହେବାରୁ ବ୍ରହ୍ମା ନିଜେ ଯାଇ ବାୟୁଦେବତାଙ୍କୁ ଅନୁରୋଧ କରିବାରୁ ସେ ପର୍ବତ ଗୁମ୍ଫାରୁ ବାହାରକୁ ଆସିଲେ ଓ ବ୍ରହ୍ମାଙ୍କ ସ୍ପର୍ଶରୁ ହନୁମାନ ସଚେତନ ହେଲା ।

ବାୟୁଦେବଙ୍କୁ ଅଧିକ ପ୍ରସନ୍ନ କରିବା ପାଇଁ ବ୍ରହ୍ମା ସମସ୍ତ ଦେବତା ଓ ଦିକ୍‌ପାଳମାନଙ୍କୁ ଅନୁରୋଧ କଲେ ହନୁମାନକୁ ବରଦାନ






କରିବାକୁ । ଇନ୍ଦ୍ର ବର ଦେଲେ ଭବିଷ୍ୟତରେ ବଜ୍ର ହନୁମାନର କୌଣସି କ୍ଷତି କରିବ ନାହିଁ । ସୂର୍ଯ୍ୟଦେବ ନିଜ ତେଜରୁ କିଛି ଅଂଶ ହନୁମାନଙ୍କୁ ପ୍ରଦାନ କରି କହିଲେ ଯେ ତାଙ୍କ ବରଦାନ ଯୋଗେ ହନୁମାନ ଭବିଷ୍ୟତରେ ଜଣେ ମହାନ ବକ୍ତା ଓ ବିଦ୍ୱାନ ଭାବରେ ପ୍ରସିଦ୍ଧି ଲାଭ କରିବେ । ବରୁଣଦେବ କହିଲେ ହନୁମାନ ଜଳ ମଧ୍ୟରେ ଅନାୟାସରେ ବିଚରଣ କରିପାରିବ । ଯମରାଜ ବର ଦେଲେ କି କାଳଦଣ୍ଡ ଦ୍ୱାରା ହନୁମାନର କଦାପି ମୃତ୍ୟୁ ହେବ ନାହିଁ । କୁବେର ହନୁମାନଙ୍କୁ ବର ଦେଲେ ଯେ ତାଙ୍କର ଅସ୍ତ୍ର ଶସ୍ତ୍ର ହନୁମାନଙ୍କୁ କଦାପି ଆଘାତ କରିପାରିବ ନାହିଁ । ଶିବ ମଧ୍ୟ ବର ଦେଲେ କି ତାଙ୍କର ଶକ୍ତି ହନୁମାନର କୌଣସି କ୍ଷତି କରିବ ନାହିଁ । ବ୍ରହ୍ମା ଓ ବିଶ୍ୱକର୍ମା ମଧ୍ୟ ବର ଦେଲେ । ସେହି ସବୁ ବର ପ୍ରାପ୍ତ କରି ସେ ହେଲା ଦୁର୍ଦ୍ଧର୍ଷ, ଯୁଦ୍ଧରେ ଅଜେୟ, କାମରୂପ ଏବଂ କାମଗାମୀ । ନିଜ ପୁତ୍ରକୁ ଏପରି ଭାବରେ ଶକ୍ତିଶାଳୀ ଦେଖି ବାୟୁଦେବ ଖୁବ୍ ଖୁସି ହେଲେ ।

କିନ୍ତୁ ଏ ଘଟଣା ପରେ ଆଉ ଏକ ସମସ୍ୟା ଦେଖାଦେଲା । ହନୁମାନ ଶକ୍ତିଶାଳୀ ହୋଇ ବନ ମଧ୍ୟରେ ନିରଙ୍କୁଶ ଭାବରେ ବିଚରଣ କରି ଋଷିମୁନିମାନଙ୍କୁ ବହୁତ ହଇରାଣ କଲା । ଏଣେ ଚପଳମତି ବାଳକ, ଏଣେ ପ୍ରଭୂତ ଶକ୍ତିଶାଳୀ । ତେଣୁ ସେ କୌତୂହଳବଶତଃ ଗଛ ଭାଙ୍ଗି ପକାଉଥିଲା ତ ଋଷିମୁନିଙ୍କ ବଲ୍କଳ ମୃଗଛାଲ ଆଦି ଛଣ୍ଡାଇ ଫୋପାଡ଼ ଦେଉଥିଲା । ଏସବୁ ନ କରିବାକୁ ତାକୁ ବାୟୁଦେବ ଓ ତା'ର ମାତା ଅନେକ ଥର କହିଲେ ମଧ୍ୟ ସେ ଜିଦି କରି ସେହି କାମହିଁ କରୁଥିଲା ।

ହନୁମାନର ବ୍ୟବହାରରେ ଋଷିମୁନିମାନେ ବହୁତ ହଇରାଣ ହେଲେ, ଏଣେ ତାକୁ ରାଗି ମଧ୍ୟ କିଛି କହିପାରୁ ନାହାନ୍ତି । ଯେତେହେଲେ ସେ ଏକ ସରଳ ବାଳକ । ଶେଷରେ ମୁନି-ଋଷିମାନେ ଏକତ୍ରିତ ହୋଇ ନିଜ ନିଜ ଭିତରେ ଆଲୋଚନା କରି ହନୁମାନଙ୍କୁ

ଅଭିଶାପ ଦେଲେ । ସେମାନେ କହିଲେ, "ହନୁମାନ ତୋର ଏହି ଚପଳତା ଓ କୌତୁକ ଆମ ପାଇଁ ହୋଇ ଉଠୁଛି ସମସ୍ୟା । ତୁ ବଡ଼ହେବା ପରେ ଭଗବାନ୍ ବିଷ୍ଣୁ ଯେତେବେଳେ ଅବତାର ନେବେ ତାଙ୍କର ବାହନ ହୋଇ ରହିବୁ ବୋଲି ଆମେ ଜାଣିଛୁ । ଏବେ ଆମେ ଏହିପରି ଇଚ୍ଛା କରୁଛୁ ଯେ ଭଗବାନ୍ ବିଷ୍ଣୁଙ୍କ ଅବତାରଙ୍କୁ ନ ଦେଖିବା ପର୍ଯ୍ୟନ୍ତ ତୋର ଏହି ବଳ ଓ ପରାକ୍ରମ ସମ୍ପର୍କରେ ତୁ ସମ୍ପୂର୍ଣ୍ଣ ବିସ୍ମରଣ ହୋଇ ରହିବୁ । ତାଙ୍କୁ ଦର୍ଶନ କରିବା ପରେ ତୁ ନିଜର ସବୁ ଶକ୍ତି ଫେରି ପାଇବୁ ।"

ତା'ପରେ ହନୁମାନ ନିଜ ଶକ୍ତି ସମ୍ପୂର୍ଣ୍ଣ ରୂପେ ଭୁଲିଯାଇ ଜଣେ ସାଧାରଣ ବାଳକ ଭାବରେ ସ୍ୱାଧ୍ୟାୟ ଓ ଜ୍ଞାନ ଅର୍ଜନ କରିବାରେ ମନ ଦେଲା । କିଛିଦିନ ପରେ ଋକ୍ଷରାଜ ମରିଯିବାରୁ ବାଳୀ ରାଜା ହେଲେ ଓ ସୁଗ୍ରୀବ ଯୁବରାଜ ହେଲେ । ପ୍ରଥମରୁହିଁ ସୁଗ୍ରୀବ ଓ ହନୁମାନଙ୍କ ମଧ୍ୟରେ ମିତ୍ରତା ଥିଲା । ଯେତେବେଳେ ବାଳୀ ଓ ସୁଗ୍ରୀବଙ୍କର ଶତ୍ରୁତା ହେଲା ସେତେବେଳେ ମୁନିଋଷିଙ୍କ ଅଭିଶାପରୁ ହନୁମାନ ନିଜ ଶକ୍ତି ବିଷୟ ବିସ୍ମୃତ ହୋଇଥିଲା ତେଣୁ ସୁଗ୍ରୀବକୁ ସାହାଯ୍ୟ କରିପାରୁ ନଥିଲା ।"

ଅଗସ୍ତି କହିଲେ, "ରାମ, ସୂର୍ଯ୍ୟଙ୍କଠାରୁ ବ୍ୟାକରଣ ଶିଖୁ ଶିଖୁ ସେ ସୂର୍ଯ୍ୟଙ୍କ ସହିତ ଉଦୟାଚଳଠାରୁ ଅସ୍ତାଚଳ ପର୍ଯ୍ୟନ୍ତ ଭ୍ରମଣ କରୁଥିଲା । କୌଣସି ବିଦ୍ୟାରେ ମଧ୍ୟ ତା' ପରି କେହି ଦ୍ୱିତୀୟ ନାହିଁ । ସେହିଁ ଭବିଷ୍ୟତରେ ହେବ ବ୍ରହ୍ମା ।"

ତା'ପରେ ରାମ ତାଙ୍କର ପ୍ରିୟ ହନୁମାନର ବଳ, ବୁଦ୍ଧି ବିବେକ, ଜ୍ଞାନ ଇତ୍ୟାଦି ବିଷୟରେ ପ୍ରଶଂସାମାନ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ ଓ ଋଷି ଅଗସ୍ତ୍ୟଙ୍କୁ ବାଳୀର ପିତା ଋକ୍ଷରାଜଙ୍କ ବିଷୟରେ ଜାଣିବା ପାଇଁ ପ୍ରଶ୍ନ କଲେ ।





# ପ୍ରତିଶୋଧ

ମଳୟପୁରର ଅଧିବାସୀ ମହାଦେବ ଥିଲେ ଜଣେ ଯାଦୁକର । ସେ ଅନେକ ପ୍ରକାର ଯାଦୁବିଦ୍ୟା ଓ ମନ୍ତ୍ର ଯନ୍ତ୍ର ଶିଖିଥିଲେ ମଧ୍ୟ ସେସବୁର ଦୁରୁପଯୋଗ କେବେ କରୁ ନଥିଲେ । ନିଜେ ପରିଶ୍ରମ କରି ଯାହା ପାଉଥିଲେ ସେଇଥିରେ ସେ ଚଳୁଥିଲେ । ତାଙ୍କର ପୁଅଟିଏ ଥାଏ; ତା'ର ନାମ ଲକ୍ଷ୍ମଣ । ସେ ତାକୁ ସବୁ ପ୍ରକାର ଯାଦୁବିଦ୍ୟା ଶିଖାଇଥା'ନ୍ତି । ଲକ୍ଷ୍ମଣ କିନ୍ତୁ ଯାଦୁବିଦ୍ୟାର ଚମତ୍କାରିତା ଦେଖାଇ ଧନ ରୋଜଗାର କରିବାକୁ ଗୃହିଲା । ସେ ଷୋହଳ ବର୍ଷ ବୟସରେ ଦେଶ ପର୍ଯ୍ୟଟନ ପାଇଁ ଗଲା । ରାସ୍ତାରେ ଗୋଟିଏ ପରେ ଗୋଟିଏ ରାଜ୍ୟ ପଡୁଥା'ଏ । ସେ ପ୍ରତ୍ୟେକ ରାଜ୍ୟର ରାଜାଙ୍କ ପାଖକୁ ଯାଇ ନିଜର ପରିଚୟ ଦେଉଥାଏ । ତା'ପରେ ଯାଦୁ ଖେଳ ପ୍ରଦର୍ଶନ କରି ବହୁତ ପଇସା ପାଉଥାଏ ।

ଏମିତି ଯାଉ ଯାଉ ଥରେ ସେ ଯାଇ ତୋରଣ ଦେଶରେ ପହଞ୍ଚିଲା । ସେଠାକାର ରାଜା ଥିଲେ ବିକ୍ରମସେନ । ରାଜା ବିକ୍ରମସେନଙ୍କର ବିବାହର ବହୁବର୍ଷ ପରେ ପୁଅଟିଏ ହୋଇଥାଏ । ତା'ର ଜାତକ ଦେଖି ଜ୍ୟୋତିଷମାନେ କହିଥା'ନ୍ତି ଯେ କୌଣସି ଯାଦୁକର ଯୋଗୁ ରାଜପୁତ୍ରଙ୍କର କୌଣସି କ୍ଷତି ବା ହାନି ହେବାର ଯୋଗ ଅଛି । ସେଥିପାଇଁ ଯାଦୁକର ଦେଖିବା ମାତ୍ରେ ରାଜାଙ୍କ ହୃଦୟ ଭୟରେ କମ୍ପି ଉଠିଲା । କିନ୍ତୁ ସେସବୁ ସେ ବାହାରେ ପ୍ରକାଶ ନ କରି ଯାଦୁକର ଲକ୍ଷ୍ମଣକୁ ଯଥାବିଧି ସ୍ୱାଗତ କଲେ । ରାଜା ପରେ ମନ୍ତ୍ରୀ ଜ୍ଞାନଦେବଙ୍କ ସହିତ ମନ୍ତ୍ରଣା କଲେ ଯାଦୁକରକୁ ଯେପରି ବେଶି ପ୍ରଶ୍ରୟ ଦିଆ ନଯାଏ । ମନ୍ତ୍ରୀ ତା'ର ବ୍ୟବସ୍ଥା କଲେ । କିନ୍ତୁ ଅନ୍ୟ ଜଣେ ପାରିଷଦ ଏକଥା ଶୁଣି

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ରାଜାଙ୍କୁ କହିଲେ, "ମହାରାଜ, ଏତେ ଭାବନା କାହିଁକି ? ତାକୁ ମାରିଦେଲେ କଥା ଶେଷ ।"

ରାଜା ମହା ଚିନ୍ତାରେ ପଡ଼ିଲେ, କାରଣ ନିର୍ଦ୍ଦୋଷୀକୁ ମାରିବା ପାପ, ଏଣେ ପୁଅର ଜୀବନ ଉପରେ କିଛି ବିପଦ ପଡ଼ିପାରେ । ତେଣୁ ରାଜା ଚୁପ୍ ରହିଲେ ।

କିନ୍ତୁ ଧୂର୍ତ୍ତ ପାରିଷଦଟି ରାତିରେ ଖାଦ୍ୟ ସହିତ ବିଷ ମିଶାଇ ଲକ୍ଷ୍ମଣକୁ ମାରିଦେଲା । କଥାଟି ଯେତେ ଗୁପ୍ତରେ ରଖିଲେ ମଧ୍ୟ ଶେଷରେ ଲକ୍ଷ୍ମଣର ବାପା ମହାଦେବ ସେକଥା ଲୋକଙ୍କ କଥାବାର୍ତ୍ତାରୁ ଶୁଣି ତୋରଣ ଦେଶରେ ଯାଇ ପହଞ୍ଚିଲେ । ସବୁ ବିଷୟରେ ଖବର ସଂଗ୍ରହ କରିବା ପରେ, ଦିନେ ବାଳକ ରାଜକୁମାରଙ୍କ ଦାସୀମାନେ ବଗିଚାରେ ଖେଳାଉଥିବା ସମୟରେ ସେ ତାଙ୍କୁ ମନ୍ତ୍ର ଦ୍ୱାରା ଉଡ଼ାଇ ନେଇ ନିଜ ଦେଶକୁ ଚାଲିଗଲେ ।

ନିଜ ଦେଶରେ ପହଞ୍ଚି ମହାଦେବ ରାଜକୁମାରଙ୍କ ପୋଷାକ ଓ ଅଳଙ୍କାର ସବୁ କାଢ଼ି ଗୋଟିଏ କାଠ ପେଟିରେ ରଖିଲେ । ତା'ପରେ ଯାଦୁକର ମହାଦେବର ପୁଅ ଭାବରେ ସେ ସେଠାରେ ବାସ କଲେ । ତାଙ୍କର ନାମ ରଖାହେଲା ବୀରମଣି ।

ଏଣେ ରାଜା ଯେତେବେଳେ ଜାଣିପାରିଲେ ଯେ ତାଙ୍କର ଅତି ଆଦରର ପୁତ୍ରକୁ କିଏ ହରଣଚାଲି କରି ନେଇ ଯାଇଛି, ସେ ଦୁଃଖରେ ଓ ହତାଶାରେ ଭାଙ୍ଗି ପଡ଼ିଲେ । ରାଜପଦ ପାଇଁ କେହି ଉତ୍ତରାଧିକାରୀ ନାହିଁ । ତାଙ୍କୁ ଚତୁର୍ଦ୍ଦିଗ ଶୂନ୍ୟ ଲାଗିଲା । ସେ ଆତ୍ମହତ୍ୟା କରିବାକୁ ମନସ୍ଥ କଲେ । କିନ୍ତୁ ସେତେବେଳେ ମନ୍ତ୍ରୀ ଜ୍ଞାନଦେବ ତାଙ୍କୁ ସେଥିରୁ ନିବର୍ତ୍ତାଇ କହିଲେ, "ମହାରାଜ, ଜ୍ୟୋତିଷମାନେ କହିଛନ୍ତି ରାଜକୁମାରଙ୍କର ଯାଦୁକର ଯୋଗୁ ହତ ହୋଇପାରେ, କିନ୍ତୁ ମୃତ୍ୟୁ କଥା ତ କହିନାହାନ୍ତି । ପୁଣି ଏସବୁ ଘଟିଲା ସେହି ମୂର୍ଖ ପାରିଷଦର କାର୍ଯ୍ୟ ଯୋଗୁ । ଏବେ ଧୈର୍ଯ୍ୟ ଧରନ୍ତୁ । ଯାହା ଭଗବାନଙ୍କର ଇଚ୍ଛା ।"

ରାଜା ସେହି ଦିନଠାରୁ ଚୁପ୍‌ଚାପ୍ ରହିଲେ । କେଉଁଥିରେ ମନ ଲାଗୁ ନଥାଏ । ତେବେ



କାଳକ୍ରମେ ସେ ସେସବୁ ଘଟଣା କଥାଟା ଭୁଲିଯାଇ ରାଜକାର୍ଯ୍ୟରେ ଅଧିକ ମନୋନିବେଶ କଲେ ।

ଲକ୍ଷ୍ମଣ ମରିବାବେଳେ ତାକୁ ଷୋହଳ ବର୍ଷ ବୟସ ହୋଇଥିଲା । ମହାଦେବ ରାଜକୁମାରଙ୍କୁ ପାଳି ପୋଷି ଷୋଳବର୍ଷର କରିଲେ । ତା'ପରେ ସେ ତାଙ୍କୁ ନେଇ ତୋରଣ ଦେଶକୁ ଗଲେ । ସେ ରାଜକୁମାରଙ୍କୁ କହିଲେ, "ପୁଅ, ତୁ ଯେତେବେଳେ ଶିଶୁ ଥିଲୁ ତୋ ଭାଇ ଲକ୍ଷ୍ମଣ ଏଇ ଦେଶକୁ ଆସି ରାଜାଙ୍କ ପାଖରେ ରହିଥିଲା । ତୁ ଏଇ ପେଟିଟି ନେଇ ରାଜାଙ୍କ ପାଖକୁ ଯାଇ କହିବୁ, କି ସେ ତୋ ଭାଇକୁ ଯେଉଁ ପୁରସ୍କାର ଦେଇଛନ୍ତି, ତା'ର ବଦଳରେ ମୁଁ ଏଇ ପୁରସ୍କାର ରାଜାଙ୍କୁ ଦେଉଛୁ । ଏତକ କହି ପେଟିଟି ରାଜାଙ୍କୁ ଦେବୁ ।"

ବୀରମଣି ବିସ୍ମିତ ହୋଇ ମହାଦେବଙ୍କୁ ପଚାରିଲା, "ବାପା, ତମେ ଏପର୍ଯ୍ୟନ୍ତ ମୋତେ କହିନାହିଁ କି ମୋର ଭାଇ ଜଣେ ଅଛନ୍ତି ବୋଲି ।"

"ପୁଅ ଏବେ ମୁଁ ଯାହା କହୁଛି ସେହି ଅନୁସାରେ କାମ କର । ତା'ପରେ ତୋ ଭାଇ ବିଷୟରେ ଖବର ତୁ ପାଇ ପାରିବୁ ।" ମହାଦେବ କହିଲେ ।

ବୀରମଣି କାଠପେଟିଟି ଧରି ରାଜଭବନ ଅଭିମୁଖେ ଚାଲିଲେ । ସେଠାରେ ପହଞ୍ଚି ରାଜାଙ୍କୁ ପ୍ରଣାମ କରି ସେ କହିଲେ; "ମହାରାଜ, ମୁଁ ଯାଦୁକର ମହାଦେବଙ୍କ ପୁତ୍ର ବୀରମଣି । ବହୁତ ବର୍ଷ ପୂର୍ବେ ମୋ ଭାଇ ଲକ୍ଷ୍ମଣ ଯେତେବେଳେ ଯାଦୁବିଦ୍ୟା ପ୍ରଦର୍ଶନ କରିବାକୁ ଏଠାକୁ ଆସିଥିଲେ ସେତେବେଳେ ଆପଣ ତାଙ୍କୁ ଯେଉଁ ପୁରସ୍କାର ଦେଇଥିଲେ ତା' ବଦଳରେ ମୋର ପିତା ଆପଣଙ୍କୁ ଏହି ପୁରସ୍କାର ପଠାଇଛନ୍ତି ।"

ରାଜା ପେଟିଖୋଲି ଦେଖିଲେ ସେଥିରେ ତାଙ୍କ ବାଳକ ପୁତ୍ର ଭଦ୍ରସେନର ପୋଷାକ ଓ ଅଳଙ୍କାର ସବୁ ଥିଲା । ତାକୁ ଦେଖି ରାଜାଙ୍କର ଦୁଃଖ ଓ କ୍ରୋଧ ଏକାକାର ହୋଇଗଲା ଏବଂ ସେ ପ୍ରାୟ ପାଗଳ ହୋଇଗଲେ । କ୍ରୋଧରେ

ଆବେଶରେ ସେ ଗର୍ଜ୍ଜନ କରି ଉଠିଲେ ଓ ନିଜ ତଲୱାର ଧରି ବୀରମଣିଙ୍କୁ ବଧ କରିବାକୁ ଉଦ୍ୟତ ହେଲେ । ମନ୍ତ୍ରୀ ଜ୍ଞାନଦେବ ତତ୍-କ୍ଷଣାତ ରାଜାଙ୍କୁ ଧରି ପକାଇ କହିଲେ, "କ୍ଷାନ୍ତ ହୁଅନ୍ତୁ ମହାରାଜ, ଥରେ ଭୟର ଆବେଶରେ ଥାଇ ଏକ ଭୟଙ୍କର ପାପକୁ ପ୍ରଶ୍ରୟ ଦେଇଥିଲେ, ଆଜି ପୁଣି କ୍ରୋଧବଶରେ ଆଉରି ଏକ ପାପ କରି ବସିବେ । ଦେଖନ୍ତୁ ଯଦି ଯାଦୁକର ଭଦ୍ରସେନଙ୍କୁ ବଧ କରିଥା'ନ୍ତା ତେବେ ସେ ସେତେବେଳେ ଏସବୁ ନ ପଠାଇ ଏବେ କାହିଁକି ପଠାନ୍ତା । ଆଉରି କିଛି ଗୁଢ଼ ରହସ୍ୟ ରହିଛି । ଧୈର୍ଯ୍ୟ ଧରି ଅପେକ୍ଷା କରନ୍ତୁ ।" ରାଜା ଚୁପ୍ ରହିଲେ ।

ତା'ପରେ ମନ୍ତ୍ରୀ ପେଟିକୁ ଖୋଲି ସବୁ ଜିନିଷ ବାହାର କରି ଦିଅନ୍ତେ ଶେଷକୁ ଏକ ଛୋଟ ଚିଠିଟିଏ ପାଇଲେ । ସେଥିରେ ଲେଖାଅଛି, "ମହାରାଜ ଏବେ ଯାହାକୁ ଆପଣ ମାରିଲେ ସେ ଆପଣଙ୍କ ପୁତ୍ର ଭଦ୍ରସେନ ମୋ ପୁଅ ନୁହେଁ । ଏବେ ବୁଝନ୍ତୁ ମୋର ନିର୍ଦ୍ଦୋଷ ପୁତ୍ରକୁ ହତ୍ୟା କରି କି ପାପ ଆପଣ କରିଥିଲେ । ଏବେ ମୋର ଦୁଃଖ ଆପଣ ବୁଝିପାରିବେ ।"

ଏବେ ଘଟଣାଟା ସମସ୍ତେ ବୁଝିଗଲେ । ମନ୍ତ୍ରୀ ରାଜାଙ୍କୁ ବନ୍ଦ କରି ନଥିଲେ, ରାଜା ବୀରମଣିଙ୍କୁ ନିଶ୍ଚୟ ବଧ କରିଥା'ନ୍ତେ ଏବଂ ତା'ପରେ ରାଜାଙ୍କ ଅବସ୍ଥା କ'ଣ ହୋଇଥା'ନ୍ତା । ମନ୍ତ୍ରୀଙ୍କ ଚତୁରତା, ଧୈର୍ଯ୍ୟ ଓ ପ୍ରକୃତ ଅନ୍ତର୍ଦୃଷ୍ଟି ଯୋଗୁ ରାଜା ତାଙ୍କର ହରାଇଥିବା ପୁତ୍ରକୁ ଫେରି ପାଇଲେ । ଏବେ ମନ୍ତ୍ରୀ ତାଙ୍କର ପ୍ରିୟାଦପି ପ୍ରିୟ । ସେ ସବୁ ଭୁଲିଯାଇ ଆନନ୍ଦରେ ନିଜ ପୁତ୍ରକୁ ଆଲିଙ୍ଗନ କଲେ । ତା'ପରେ ଯାଦୁକର ମହାଦେବଙ୍କୁ ଡାକି ଯଥେଷ୍ଟ ସତ୍କାର କରି ତାଙ୍କ ପାଖରେ କ୍ଷମା ମାଗିଲେ । ତାଙ୍କୁ ଓ ତାଙ୍କ ପରିବାରକୁ ଯଥେଷ୍ଟ ସମ୍ମାନ ଦେଇ ରାଜନବରରେହିଁ ରଖିଲେ ।





# ରାଜାଙ୍କ ଜୁଆଇଁ

ନରୱେ ଦେଶରେ ଥିଲା ଓ୍ୱିଲ୍‌ସନ୍ ନାମକ ଯୁବକ। ତା' ସ୍ୱଭାବ ଏପରି ଯେ ସେ କାମଦାମରୁ ଯାହା ପଇସା ପାଏ, ତାକୁ ଅନ୍ୟର ଉପକାର ପାଇଁ ଖର୍ଚ୍ଚ କରିଦିଏ। ନିଜ ପାଇଁ କିଛି ଚିନ୍ତା କରେ ନାହିଁ।

ଲୋକେ ତା'ଠାରୁ ଉପକାର ପାଆନ୍ତି, କିନ୍ତୁ ପଛରେ ଥଟ୍ଟା କରି କହନ୍ତି, "ବାପ୍‌ରେ ବାପ୍! ଟୋକାର କାରବାର ଦେଖ! ସତେ ଅବା ରଜାଙ୍କ ଜୁଆଇଁ!!"

ବାରମ୍ବାର ଏକଥା ଶୁଣିବା ପରେ ଓ୍ୱିଲ୍‌ସନ୍‌ର ମନରେ ବଡ଼ କୌତୁହଳ ହେଲା— ରାଜାଙ୍କ ଜୁଆଇଁର ବିଶେଷତ୍ୱ କ'ଣ? ଥରେ ରାଜଧାନୀ ଯାଇ ଦେଖିଲେ ହୁଅନ୍ତା।

ଦିନେ ସେ ଗାଁରୁ ବାହାରି ପଡ଼ିଲା। ବାଟରେ ଆଉ ଦୁଇଜଣ ଯୁବକଙ୍କୁ ସେ ଭେଟିଲା। ସେମାନେ ବି ରାଜଧାନୀ ଯାଉଥିଲେ।

ଯାଉ ଯାଉ ଦେଖିଲେ ନଈକୂଳରେ ବୁଢ଼ାଟିଏ ସେମାନଙ୍କୁ ଡାକି କହିଲା, "ପିଲେ, ମୋତେ କେହି ପାଣି ମୁଢଏ ଆଣିଦେବ!"

ଅନ୍ୟ ଦୁଇଜଣ ଶୁଣିଲେ ନାହିଁ। ଓ୍ୱିଲସନ୍ କିନ୍ତୁ ଖଣ୍ଡିଏ ଭଙ୍ଗା ପାତ୍ର ଯୋଗାଡ଼ କରି ପାଣି ଆଣି ବୁଢ଼ାକୁ ଦେଲା। ବୁଢ଼ା ଖୁସି ହୋଇ କହିଲା, "ପୁଅ କୁଆଡ଼େ ଯାଉଛୁ?

"ରାଜଧାନୀକୁ ଯାଉଛି। ରାଜାଙ୍କ ଜୁଆଇଁଙ୍କୁ ଦେଖିବା ପାଇଁ।" ଓ୍ୱିଲସନ୍ କହିଲା।

"ବେଶ୍। ମୁଁ ଆଶୀର୍ବାଦ କରୁଛି, ଭଲ କରି ଜାଣିବୁ। ମନେ ରଖିଥା, ଯିଏ ତୋର ସେବା କରିଥିବ ତାକୁ କେବେହେଲେ ହତାଦର କରିବୁ ନାହିଁ। ଯିଏ ଦିନେ ଶୀର୍ଷରେ ଥିବ, ତାକୁ କେବେ ହେୟ କରିବୁ ନାହିଁ।" ବୁଢ଼ା ଏତିକି କହି ଓ୍ୱିଲସନ୍‌କୁ ବିଦାୟ ଦେଲା।

ଓ୍ୱିଲସନ୍ ଅଳ୍ପଦୂର ଯାଇଛି, ନିଜ ପୁରୁଣା ଯୋତା ହଳକରୁ ପଟେ ଛିଣ୍ଡିଗଲା । "ସିଏ ମୋର ଏତେ ସେବା କରିଛି, ତାକୁ ଫୋପାଡି ଦେବି ନାହିଁ ।" ଏହା କହି ସେ ତାକୁ ହାତରେ ଧରିଲା । ଆଉ କିଛି ବାଟ ଯାଇଛି, ଦେଖିଲା ଗୋଟିଏ ମଇଁଷି ଶିଙ୍ଘ ପଡ଼ିଛି । "ଇଏ ଦିନେ ମଇଁଷୀର ଶୀର୍ଷରେ ଥିଲା ।" ଏହା କହି ସେ ତାକୁ ଉଠାଇ ନେଲା ।

ନୌକାରେ ନଦୀ ପାରି ହେବା ବେଳେ ଅନ୍ୟ ଦୁଇଜଣ ଯୁବକ ତଥା ଅନ୍ୟ ଯାତ୍ରୀମାନଙ୍କ କଥାବାର୍ତ୍ତାରୁ ସେ ବୁଝିଲା, ରାଜା ଘୋଷଣା କରିଛନ୍ତି କି ରାଜକୁମାରୀ ଗୋଟିଏ ସ୍ୱପ୍ନ ଦେଖିଛନ୍ତି । ସେ ଯାହା ହାତରେ ଦୁଇଟି ମୂଲ୍ୟବାନ ପ୍ରତୀକ ଦେଖିବେ, ତା' ସହ କଥା ହେବେ । ସେ ଯୁବକ ଦୁଇଜଣ ଓ ଅନ୍ୟ କେଇଜଣ ହୀରାନୀଳା ପ୍ରଭୃତି ଅନେକ ପ୍ରକାର ମୂଲ୍ୟବାନ ପ୍ରତୀକ ଧରି ଯାଉଥିଲେ ।

ରାଜଧାନୀରେ ଓ୍ୱିଲସନ୍ ପ୍ରବେଶ କରିବା ପରେ ରାଜକର୍ମଚାରୀମାନେ ତାକୁ ରାଜକୁମାରୀଙ୍କ କକ୍ଷରେ ପହଞ୍ଚାଇଲେ । ରାଜକୁମାରୀ ଥରେ ତାକୁ ଅନାଇ ଦେଇ କହିଲେ, "ଠିକ୍! ମୁଁ ସ୍ୱପ୍ନରେ ତେବେ ଏଇ ଯୁବକକୁ ଦେଖିଥିଲି । ହାତରେ ଶିଙ୍ଘ ଓ ପୁରୁଣା ଜୋତା ଥିଲା!" ସେ ତା'ପରେ ଯୁବକକୁ ପଚାରିଲେ, "ତମେ କାହିଁକି ରାଜଧାନୀକୁ ଆସିଲ?"

"ରାଜାଙ୍କ ଜୁଆଇଁ କପର ଜାଣିବା ପାଇଁ!"

ରାଜକୁମାରୀ ହସିଲେ । ସେ ରାଜାଙ୍କୁ କହିଲେ, "ସ୍ୱପ୍ନ ଅନୁସାରେ ଏହି ଯୁବକ ତମ ଜୁଆଇଁ ହେବେ!"

ରାଜାଙ୍କର ଆଉ କେହି ପୁଅଝିଅ ନଥିଲେ । ଓ୍ୱିଲସନ୍ ରାଜକୁମାରୀଙ୍କୁ ବିଭା ହେଲା ଓ ପରେ ରାଜା ହେଲା । ଦିନେ ସେ ତା' ଗାଁକୁ ଯାଇଥାଏ । ବୁଢ଼ାମାନେ କହୁଥାନ୍ତି, "ମୁଁ କହୁ ନଥିଲି? ଆମ ଓ୍ୱିଲସନ୍‌ର କାରବାର ଠିକ୍ ରାଜାଙ୍କ ଜୁଆଇଁ ଭଳି!"





# ଜାମାତା ନିର୍ବାଚନ

[୨]

ପ୍ରିୟମ୍ବଦା ପିତାମାତାଙ୍କର ଭୟଙ୍କର ଯୋଜନା ବିଷୟରେ ଶୁଣିବା ପରେ ସେସବୁକୁ ନିଷ୍ଫଳ କରିବା ପାଇଁ ନିଜେ ମଧ୍ୟ ମନେ ମନେ କିଛି ଯୋଜନା ପ୍ରସ୍ତୁତ କଲେ। ଅବଶ୍ୟ ତାହା ଥିଲା ଅତ୍ୟନ୍ତ କଷ୍ଟକର। ଏସବୁ ଯୋଜନା ମନେ ମନେ କରିସାରିବା ପରେ ରାଜକୁମାରୀ ପ୍ରିୟମ୍ବଦା ସନ୍ଧ୍ୟା ସମୟରେ ଉଦ୍ୟାନକୁ ଯାଇ ବିଜୟକୁ ଭେଟିଲେ। ସେ ବିଜୟକୁ ସବୁକଥା ଖୋଲି କହିଲେ। ତାଙ୍କ ପିତାମାତାଙ୍କର ଭୟଙ୍କର ଯୋଜନା ସମ୍ପର୍କରେ ସବୁ କହିସାରି ଶେଷକୁ ସେ ବିଜୟକୁ କହିଲେ, "ଦେଖ ବିଜୟ, ତୁମେ ମୋ ପ୍ରାଣ ରକ୍ଷା କରିଛ। ପୁଣି ତୁମର ମୋ ପ୍ରତି ଶ୍ରଦ୍ଧା ଅଛି। ମୁଁ ମଧ୍ୟ ଭାବି ଦେଖିଛି ତୁମକୁ ବିବାହ କରି ମୁଁ ସୁଖୀ ହେବି। କିନ୍ତୁ ତମେ କୌଣସି ରାଜପରିବାରର ଲୋକ ନୁହଁ ବା ତୁମର ଅକଳନ୍ତ ଧନ ଦୌଲତ ନାହିଁ; ସେଥିପାଇଁ ମୁଁ ଯଦି ତୁମ ସହିତ ବିବାହ ପ୍ରସ୍ତାବ ମୋ ପକ୍ଷରୁ କରେ ମୋ ପିତାମାତା ତାକୁ ନିଷ୍ଫଳ କରିବାର ନିଶ୍ଚୟ ଚେଷ୍ଟା କରିବେ। କିନ୍ତୁ ତୁମେ ମୋ ଉପରେ ବିଶ୍ୱାସ ରଖ। ମୁଁ ସେମାନଙ୍କର ସମସ୍ତ ଚେଷ୍ଟା ପଣ୍ଡ କରିବି ଓ ତୁମ ସହିତ ସମ୍ମାନର ସହ ବିବାହ କରିବି। ସେଥିପାଇଁ ମୋର ଯେତେ କଷ୍ଟ ହେଲେ ମଧ୍ୟ ମୁଁ ସହିବାକୁ ରାଜି ଅଛି। କେବଳ ତୁମେ ମୋ ସହିତ ସହଯୋଗ କର ଓ ନିଜ ରାସ୍ତାରେ ଦୃଢ଼ ରୁହ। ଭଗବାନଙ୍କ ଇଚ୍ଛାରୁ ସବୁ ଠିକ୍ ହୋଇଯିବ। ମୋ ଜାତକରେ ତ ଅଛି ମୁଁ ରାଜପରିବାର ଲୋକଙ୍କୁ ବିବାହ କରିବି ନାହିଁ, କରିବି ଜଣେ ସାଧାରଣ ଲୋକକୁ।"

ହୁଏତ ତାହା ସଫଳ ହୋଇ ନପାରେ ଏହି ଭୟ ବିଜୟର ମନରେ ଥିଲା।



"ଦେଖ ସେ ବିଷୟରେ ମୁଁ ବହୁତ ଚିନ୍ତା କରିଛି । ମୁଁ ଯିବା ପରେ, ତୁମେ ରାଜାଙ୍କୁ ଖବର ଦିଅ ଯେ ଜଣେ ତାନ୍ତ୍ରିକ ରାଜକୁମାରୀଙ୍କୁ ଉଦ୍ୟାନରୁ ହରଣ କରି ନେଇ ଯାଇଛି । ସେପରି ଅବସ୍ଥାରେ ରାଜା ଅବଶ୍ୟ ଘୋଷଣା କରିବେ ଯେ ଯିଏ ତାନ୍ତ୍ରିକଠାରୁ ରାଜକୁମାରୀଙ୍କୁ ଉଦ୍ଧାର କରିବ ସେହିଁ ତାଙ୍କୁ ବିବାହ କରିବ । ବାସ୍ ଦୁଇ ଚାରିଦିନ ପରେ ତୁମେ ମୋତେ ନେଇ ରାଜାଙ୍କ ପାଖକୁ ଯିବ । ମୁଁ ମଧ୍ୟ ସେଇଆ କହିବି । ତା'ପରେ ତୁମେ ବୀର ଭାବରେ ପରିଗଣିତ ହେବ ଓ ଆମର ବିବାହ ହେବ ।" ପ୍ରିୟମ୍ବଦା କହିଲେ ।

ବିଜୟ ସବୁ ବୁଝି କହିଲା, "ରାଜକୁମାରୀ, ଆପଣ ଯେପରି ମୋତେ କହିବେ ମୁଁ ସେପରି କରିବି ।"

ତେଣୁ ସେ ପଚାରିଲା, "ଯୋଜନା କି ପ୍ରକାରର ?"

"ସାବଧାନ ହୋଇ ଶୁଣ । ରାଜଭବନରୁ ବାହାରକୁ ଯିବାକୁ ଗୋଟିଏ ଗୁପ୍ତ ସୁଡ଼ଙ୍ଗ ଅଛି । ମୁଁ ସେଇ ଗୁପ୍ତ ସୁଡ଼ଙ୍ଗ ରାସ୍ତା ଦେଇ ବାହାରକୁ ଯିବି । ତୁମେ କୁହ ତୁମର ଘର କେଉଁଠି । ମୁଁ ନିଜର ବେଶ ବଦଳାଇ ଯାଇ ସେଠାରେ ଠିକ୍ ପହଞ୍ଚି ଯିବି ।" ପ୍ରିୟମ୍ବଦା କହିଲେ ।

"ଆପଣ ଥରେ ଚିନ୍ତା କରିଛନ୍ତି କି ରାଜନଅରରେ ଆପଣଙ୍କୁ ନ ପାଇଲେ ଚାରିଆଡ଼େ କି ଅବସ୍ଥା ସୃଷ୍ଟି ହେବ ?" ବିଜୟ କହିଲା ।

ବିଜୟର ଉତ୍ତର ଶୁଣି ପ୍ରିୟମ୍ବଦା ସନ୍ତୁଷ୍ଟ ହୋଇ ରାଜଭବନକୁ ଚାଲିଗଲେ । ସୁଡ଼ଙ୍ଗ ବିଷୟରେ ତାଙ୍କର କୌଣସି ଧାରଣା ନଥିଲା । କେବଳ କେଉଁଠାରେ ପ୍ରବେଶ କରିବାକୁ ହେବ ସେତିକି ଜାଣନ୍ତି । କାହାକୁ ପଚାରିଲେ କେହି ସନ୍ଦେହ କରିବ ଭାବି ସେ ଚୁପ୍ ରହିଲେ । ଭାବିଲେ ରାତିରେ ନିଜେ ଯାଇ ବୁଝିବାକୁ ଚେଷ୍ଟା କରିବେ । ରାତିରେ ସେ ସୁଡ଼ଙ୍ଗରେ ପ୍ରବେଶ କରି ଚାଲିବାକୁ ଆରମ୍ଭ କଲେ ଏବଂ ଭାବିଲେ ଏହି ଭାବରେ ଚାଲି ଚାଲି ସୁଡ଼ଙ୍ଗର ଶେଷରେ ପହଞ୍ଚିବେ । କିନ୍ତୁ



ଶେଷ କେଉଁଠି ବା କେତେଦୂର ସେ କିଛି ଜାଣନ୍ତି ନାହିଁ । ଚାଲି ଚାଲି ଥକା ହୋଇ ପଡ଼ିଲେ ତଥାପି ଚାଲିଥା'ନ୍ତି । ସୁଡ଼ଙ୍ଗ ରାସ୍ତା ଖୁବ୍ ଅନ୍ଧକାର । ବହୁଦୂର ଚାଲି ଚାଲି ମଧ୍ୟ ରାସ୍ତାର ଶେଷ ନାହିଁ । ସେଠାରୁ ଫେରି ବିଜୟଙ୍କୁ ଯେ ସେ ସମ୍ବାଦ ଦେବେ ସେକଥା ଭାବିଲା ବେଳକୁ ମଥା ଘୁରିଗଲା । ଶୀଘ୍ର ସୁଡ଼ଙ୍ଗର ଦ୍ୱାରରେ ପହଞ୍ଚିବା ପାଇଁ ସେ ଦୌଡ଼ିଲେ । କିଛି ଦୂର ଯାଇ ସେ ନିରାଶ ହେଲେ । ଏତେ କ୍ଳାନ୍ତ ହୋଇ ପଡ଼ିଥିଲେ ଯେ ଲାଗିଲା ସେ ଅଚେତ ହୋଇ ଯିବେ । କିନ୍ତୁ ବିଶ୍ରାମ କରୁ କରୁ ସେ ଗଭୀର ନିଦରେ ଶୋଇ ପଡ଼ିଲେ ।

କିଛି ସମୟ ପରେ ନିଦ ଭାଙ୍ଗିଗଲା । ମାଟି ଗୋଡ଼ ଉପରେ ଶୋଇଥିବାରୁ ଦେହ ଦରଜ ଲାଗୁଥିଲା । ତଥାପି ମଧ୍ୟ ରାଜଭବନର ପଲଙ୍କ ଓ ଗଦିଶେଯ ଉପରେ ଶୋଇବା ଅପେକ୍ଷା ଏ ନିଦ ତାଙ୍କୁ ବେଶି ମଧୁର ଓ ଆରାମ ଦାୟକ ଲାଗିଲା । ତା'ପରେ ସେ ଚିନ୍ତା କଲେ ଏବେ ତ ସାରା ରାଜ୍ୟରେ ସମସ୍ତେ ତାଙ୍କୁ ଖୋଜିବେଣି । ପୁଣି ବିଜୟ ମଧ୍ୟ ଯୋଜନା ମୁତାବକ ଯାହା କରିବାର କରିଥିବ । ତେଣୁ ଏବେ ଫେରିଯିବାର ଆଉ ଉପାୟ ନାହିଁ । କିନ୍ତୁ ସୁଡ଼ଙ୍ଗରର ଶେଷଭାଗ କେଉଁଠି କିପରି ସେ ଜାଣିବେ ? ହଠାତ୍ ତାଙ୍କର ମନେ ପଡ଼ିଲା, ଥରେ ତାଙ୍କ ବାବା କହୁଥିଲେ ଯେ ସୁଡ଼ଙ୍ଗ ଭିତରେ ଯିବାକୁ ହେଲେ ଖାଦ୍ୟ ଓ ପାନୀୟ କିଛି ସାଥିରେ ନେବା କଥା । ସଂପୂର୍ଣ୍ଣ ରାସ୍ତା ପ୍ରାୟ ଦେଡ଼ଦିନ ଲାଗିବ । ସେ କଥା ଭାବି ସେ ଭୟରେ ଥରିଲେ । କାରଣ ଏତେ କଷ୍ଟ ଜୀବନରେ ସେ କେବେ ପାଇ ନାହାନ୍ତି । ସେ ପୁଣି ଚାଲିଲେ । ମନର ଦୃଢ଼ତା ଯୋଗୁ ସେ କୌଣସି କଷ୍ଟକୁ ଖାତିର୍ କରୁ ନଥା'ନ୍ତି । ପ୍ରଥମତଃ ବିଜୟ ତାଙ୍କ ପ୍ରାଣ ରକ୍ଷା କରିଛି । ତେଣୁ ସେ ଭାବିଲେ ପ୍ରାଣରକ୍ଷାକାରୀ ପାଇଁ ଯଦି ପ୍ରାଣ ଦେବାକୁ ହୁଏ ତେବେ ପଛଘୁଞ୍ଚା କାହିଁକି ? ପୁଣି ଦ୍ୱିତୀୟତଃ ସେ ଯେତେବେଳେ ତାଙ୍କ ପିତାମାତାଙ୍କ ଯୋଜନା ବିଷୟରେ ଚିନ୍ତାକଲେ, ଦୁଃଖ,

ଘୃଣା, ଲଜ୍ଜା ଓ ଭୟରେ ତାଙ୍କ ମନ ଓ ଶରୀର ଶିହରି ଉଠିଲା । ମନେ ମନେ ସେ ସଂକଳ୍ପ କଲେ, ଯଦି ମୋ ଦେହରେ କ୍ଷତ୍ରିୟର ରକ୍ତ ଥାଏ ତେବେ ମୁଁ ସେହି ଘୃଣ୍ୟ ଯୋଜନାକୁ ପଣ୍ଡ କରିବି ଓ ବିଜୟଙ୍କୁ ବିବାହ କରିବି । କିନ୍ତୁ ବିଜୟଙ୍କୁ ଆଶା ଦେଇ ଯଦି କୌଣସି ମତେ ତା' ଜୀବନ ଉପରେ ବିପଦ ଆସେ ତେବେ ମୋର କ୍ଷତ୍ରିୟ ଘରେ ଜନ୍ମ ହେବା ବୃଥା ଏବଂ ମୋର ଜୀବନ ମଧ୍ୟ ବୃଥା । ଏହିପରି ଭାବି ଭାବି ସେ ଦୃଢ଼ତାର ସହିତ ଆଗକୁ ଚାଲିଥା'ନ୍ତି ।

ଏମିତି ଅନ୍ନଜଳ ବିନା ଦେଢ଼ଦିନ କାଳ ଚାଲି ଚାଲି ବହୁ କଷ୍ଟରେ ଅବଶେଷରେ ସେହି ଭୟଙ୍କର ସୁଡ଼ଙ୍ଗ ରାସ୍ତା ଶେଷ ହେଲା । ଶେଷ ଭାଗରେ ଥିଲା ଏକ ବିରାଟ ବୃକ୍ଷ ସେହିଠାରେ ମାଟି ଉପରକୁ ଯିବାପାଇଁ ପାହାଚ ପଡ଼ିଛି । ସେ ସେହି ପାହାଚରେ ଚଢ଼ିବାକୁ ଆରମ୍ଭ କଲେ । କାର୍ଯ୍ୟସିଦ୍ଧିର ଆନନ୍ଦ ମନରେ ଆଣିଦେଲା ଅସୀମ ଶକ୍ତି ଓ ଦୃଢ଼ତା ।

ସେ ଉପରକୁ ଚଢ଼ିଲେ । ଅଧା ଅନ୍ଧକାର ଭିତରେ ସେ କବାଟ ପରି କିଛି ଦେଖିଲେ ଓ ସେଇଟା ଟାଣି ଖୋଲିଦେଲେ । ବାହାରୁ ଆଲୋକ ଓ ପବନ ଆସି ତାଙ୍କ ଦେହରେ ଲାଗିଲା । ତାଙ୍କର ମନେ ହେଲା ଯେପରି ସେ ପ୍ରାଣ ପାଇଲେ । ସେ ଆଉ କିଛି ବିଚାର ନ କରି ଅନ୍ୟ ପଟକୁ ଓହ୍ଲାଇ ଗଲେ । କିଛି ଚିନ୍ତା କରିବା ପୂର୍ବରୁହିଁ ସେ ଶୁଣି ପାରିଲେ କେତେକ ଲୋକ ଚିତ୍କାର କରି କହୁଛନ୍ତି,



"ଦେବୀ ପ୍ରତ୍ୟକ୍ଷ ହୋଇଛନ୍ତି, ଦେବୀ ପ୍ରତ୍ୟକ୍ଷ ହୋଇଛନ୍ତି!"

ପ୍ରିୟମ୍ବଦା କିଛି ବୁଝିପାରିଲେ ନାହିଁ। ପରିସ୍ଥିତି ବିଷୟ କିଛି ବୁଝିବା ପୂର୍ବରୁହିଁ ସେ ସେଠାରେ ବେହୋସ ହୋଇ ପଡିଗଲେ। ଏବେ ସେଠାରେ ଉପସ୍ଥିତ ଥିବା ଲୋକମାନଙ୍କ ବିଷୟରେ କିଛି ଜାଣିବା ଆବଶ୍ୟକ। ଯେଉଁଠାରେ ସେ ପଡ଼ିଥିଲେ ସେହି ସ୍ଥାନର ଅନତିଦୂରରେ ନନ୍ଦନ ନାମରେ ଗ୍ରାମଟିଏ ଥାଏ। ସେହି ଗ୍ରାମରେ ବାସ କରୁଥିବା ଲୋକ ଥିଲେ ଅତ୍ୟନ୍ତ ମୂର୍ଖ। ସେମାନଙ୍କ ମୂର୍ଖତାର ସୁଯୋଗ ନେଇ ସେହି ଗ୍ରାମରେ ରହୁଥିବା ଦୁଇଜଣ ଦୁଷ୍ଟଲୋକ ନାନା ଉପାୟରେ ସମସ୍ତ ଗ୍ରାମବାସୀଙ୍କୁ ଠକୁଥା'ନ୍ତି। ଦୁଇଜଣଙ୍କ କଥା କହିବା ଶୈଳୀ ଏତେ ଗୁରୁତ୍ୱପୂର୍ଣ୍ଣ ଯେ ଗ୍ରାମବାସୀମାନେ ସେମାନଙ୍କୁ ଦୁଇ ଦେବତା ଭାବରେ ଖାତିର କରୁଥା'ନ୍ତି। ଗ୍ରାମବାସୀଙ୍କୁ ବୋକା ବନାଇବାରେ ସେମାନଙ୍କ ଉପାୟ ସବୁ ହାସ୍ୟାସ୍ପଦ ହେଲେ ମଧ୍ୟ ସରଳ ଗ୍ରାମବାସୀମାନେ ସେସବୁ କିଛି ବୁଝିପାରୁ ନଥିଲେ।

ଗ୍ରାମରେ କିଛି ବିପଦ ହେଲେ ବା ବର୍ଷା ନହେଲେ ବା ଫସଲ ନଷ୍ଟ ହେଲେ ସମସ୍ତେ ସେହି ଦୁଇଜଣଙ୍କ ପାଖକୁ ଦୌଡ଼ନ୍ତି। ଆଉ କୌଣସି ମାଙ୍ଗଳିକ କାର୍ଯ୍ୟ ହେଲେ ତ ସେମାନଙ୍କ ଉପସ୍ଥିତି ବିନା ତାହା ସମ୍ଭବ ହେବ ନାହିଁ। ସେମାନେ ନାନା ପ୍ରକାର କଥା କହି ସେମାନଙ୍କୁ ଡ଼ରାଇ ରଖିଥା'ନ୍ତି।



ଥରେ କ'ଣ ହେଲା ଶଙ୍କର ନାମକ ଗ୍ରାମବାସୀର ଘର ପୋଡ଼ିଗଲା । ସେ ନିଆଁ ଲିଭାଇବାକୁ ଚେଷ୍ଟା ନ କରି ଏହି ଦୁଇଜଣଙ୍କ ପାଖକୁ ଦୌଡ଼ିଲା । ଏମାନେ କହିଲେ ଯାଇ ପାଣି ପକାଅ । କିନ୍ତୁ ସେ ପାଣି ପକାଇବା ବେଳକୁ ସବୁ ଜଳି ଯାଇଥିଲା । ସେମାନେ ଶଙ୍କରକୁ ଧମକ ଦେଇ କହିଲେ, "ଆରେ ଦୁଷ୍ଟ, ତୋର ପାପର ଫଳ ସ୍ୱରୂପ ଘର ଜଳିଗଲା । ତୋ ପରିବାରରୁ କେହି ମଲେ ନାହିଁ ସେଇଟା ଆମ ଆଶିର୍ବାଦରୁ । ଘର ଜଳିଗଲେ କ'ଣ ହେଲା; କାଲିକି କାଲି ଆଉ ଗୋଟାଏ ଘର ତୋଳି ଦେବୁ । କିନ୍ତୁ ପ୍ରାଣ ଗଲେ କ'ଣ ଆଉ ଫେରନ୍ତା ? ସମସ୍ତେ ବଞ୍ଚିଲେ ଆମ ଆଶିର୍ବାଦରୁ । ପୁଣି ପଡ଼ିଶା ଘର ମଧ୍ୟ ରକ୍ଷା ପାଇଗଲା ।" ଶଙ୍କର ବିଚରା ସେମାନଙ୍କୁ ଆଉ କହିବ କ'ଣ; ଦୁଇଜଣଙ୍କୁ ସେଠାରେ ପ୍ରଣାମ କରି ନିଜ କାନମୁଣ୍ଡ ଆଉଁସି ରହିଲା ।

ଆଉ ଥରେ ଗୋଟିଏ ଘଟଣା ଘଟିଲା । ସେଇ ଗାଁର ଭୀମଦାସ ପୁଅ ବିନୋଦ ବେମାର ପଡ଼ିଥାଏ । ଭୀମଦାସ ପୁଅର ଚିକିତ୍ସା ପାଇଁ ସେମାନଙ୍କ ପାଖକୁ ଗଲା । ସେମାନେ ଗ୍ରାମସାରା ଲୋକଙ୍କର ଚିକିତ୍ସା ମଧ୍ୟ କରନ୍ତି । ଚିକିତ୍ସାରେ କେତେ ଲୋକ ବଞ୍ଚନ୍ତି କେତେ ଲୋକ ମରନ୍ତି । ବିନୋଦ ମରିଗଲା, ବିଚରା ଭୀମଦାସ ବହୁତ କାନ୍ଦିଲା । ସେମାନେ କହିଲେ, "ଦେଖ ତୋ ପୁଅ ଆର ଜନ୍ମରେ ପାପ ବହୁତ କରିଥିଲା ବୋଲି ମଲା । କୌଣସି ବୈଦ୍ୟ ତାକୁ ବଞ୍ଚାଇ ପାରି ନଥା'ନ୍ତେ । କିନ୍ତୁ ଆମ ହାତରେ ଚିକିତ୍ସା ପାଇ ମରିଛି ମାନେ ସେ ସିଧା ସ୍ୱର୍ଗକୁ ଗଲା । ଅନ୍ୟ କେଉଁଠି ମରିଥିଲେ ତୋ ପୁଅ ନର୍କକୁ ଯାଇଥା'ନ୍ତା ।"

ଭୀମଦାସ ମଧ୍ୟ ଭାବିଲା, "ପୁଅ ବଞ୍ଚନେ ନା ବଞ୍ଚନେ ତ ମରନ୍ତା । ଯଦି ଏବେ ସ୍ୱର୍ଗକୁ ଗଲା ତ ଭଲ କଥା ।" (କ୍ରମଶଃ)



# ପ୍ରକୃତିର ବିସ୍ମୟ!

## ଚେମେଣିଆ ଚେମେଣିଆ



ଜଙ୍ଗଲ ଚେମେଣିଆମାନେ ଯେଉଁଠି ରହନ୍ତି ସାଧାରଣତଃ ଦଳବାନ୍ଧି ରହନ୍ତି । ସମଗ୍ର ପୃଥିବୀରେ ସର୍ବାଧିକ ସଂଖ୍ୟାର ଚେମେଣିଆ ରହିଛନ୍ତି ଟେକସାସର ସାନ୍ ଏଣ୍ଟୋନିୟୋ ପ୍ରଦେଶର ଏକ ପାହାଡ଼ ଗୁମ୍ଫାରେ । ଗ୍ରୀଷ୍ମଋତୁରେ ପ୍ରାୟ କୋଡ଼ିଏ ଲକ୍ଷ ଥାଆନ୍ତି ।

## ଅଧିକ ବେଗର ମାଛ

ସମସ୍ତ ପ୍ରକାରର ମାଛମାନଙ୍କ ମଧ୍ୟରେ ମାର୍ଲ୍‌ନ ଜାତୀୟ ମାଛମାନେ ଅତ୍ୟଧିକ କ୍ଷିପ୍ରବେଗରେ ଗତି କରନ୍ତି । ସେମାନେ ଘଣ୍ଟାକୁ ପ୍ରାୟ ଚାଳିଶ୍‌ରୁ ପଚାଶ ମାଇଲ୍ ପର୍ଯ୍ୟନ୍ତ ବେଗରେ ଗତି କରନ୍ତି ।





## ହିମ ଗୁମ୍ଫା

ସାରା ପୃଥିବୀରେ ସର୍ବାପେକ୍ଷା ବୃହତ୍ତର ଓ ସର୍ବଦା ବରଫ ଆଚ୍ଛାଦିତ ଗୁମ୍ଫା ଆଷ୍ଟ୍ରିଆର ଏସ୍‌ଡ୍‌ବୀ ବେଲ୍‌ଟରେ ଅବସ୍ଥିତ । ଏହାର ଲମ୍ବା ୨୬ ମାଇଲ୍ ଓ ଏହାର ମୁଖଦ୍ୱାର ୩୩୦୦ ଫୁଟ୍ ଉଚ୍ଚରେ ଅବସ୍ଥିତ । ଗ୍ରୀଷ୍ମକାଳରେ ମଧ୍ୟ ଏହାର ତାପ ସର୍ବନିମ୍ନ ଥାଏ ।

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୫୦

ପୁରସ୍କୃତ ପରିଚୟୋକ୍ତି ଜୁନ୍ ୧୯୮୭ ସଂଖ୍ୟାରେ ପ୍ରକାଶ ପାଇବ



I. Uma Rani



S. G. Seshagiri

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃହ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଏପ୍ରିଲ୍ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ଦିଆଯିବ ।
★ ପରିଚୟୋକ୍ତି ସହ ପ୍ରେରକଙ୍କ ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

ଫେବୃଆରି '୮୭ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଠାଏ ନ ବସି ମୁଁ ବୁଲି ବୁଲୁଥାନ୍ତି ଘର ଘରକା !

ଦ୍ୱିତୀୟ ଚିତ୍ର : ହୋଇଥାନ୍ତା ଯଦି ବେଲୁନ୍ ପରି ମୋ ଦେହ ହାଲୁକା !!

ପୁରସ୍କାର ବିଜୟିନୀ : ଶ୍ରୀମତୀ କନକମଞ୍ଜରୀ ପଣ୍ଡା, ଯାଜପୁର ରୋଡ ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଂସ୍, ବଡ଼ପଳନୀ, ମାଡ୍ରାସ-୬୦୦୦୨୬

ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେସନ୍ସ, ଚନ୍ଦାମାମା ବିଲ୍ଡିଂସ, ବଡ଼ପଳନୀ, ମାଡ୍ରାସ-୬୦୦୦୨୬



Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.


CHANDAMAMA

Goodness of nature's Honey in.....

nutrine
**Honeyfab**




nutrine
**Honeyfab**
Delicious
naturally!




**India's largest selling sweets**

Nutrine Confectionery Company Private Limited, Chittoor, A.P.

CLARION/NC/8572

